ଶ୍ରୀ ଜୟକୃଷ୍ଣ ସାହିତ୍ୟବିନୋଦ ଗ୍ରନ୍ଥମାଳା
୪ର୍ଥ ଖଣ୍ଡ

# କବିତାମୃତ ।

## ( ପ୍ରଥମ ଉଚ୍ଛ୍ୱାସ )



ଶ୍ରୀ ବଳଭଦ୍ର ପଟ୍ଟନାୟକଙ୍କ ଦ୍ୱାରା ପ୍ରଣୀତ ଓ
ପ୍ରକାଶିତ ।

ପ୍ରଥମ ସଂସ୍କରଣ

**Printed by V. Kar.**
THE UTKAL SAHITYA PRESS,
**CUTTACK.**
**1933.**

ମୂଲ୍ୟ ଟ ୦ ୫ ଆଠଅଣା ମାତ୍ର

# ସୂଚୀ



---

କଟକ
ତା ୧୭-୨-୫୧

ଶ୍ରୀମାନ୍ ବାବୁ ବଳଭଦ୍ର,

ତୁମର ସ୍ନେହପ୍ରେରିତ "କାଳଯାତ୍ରୀ" ପୁସ୍ତିକା ଖଣ୍ଡି ପାଇ ଅତ୍ୟନ୍ତ ପ୍ରୀତ ହେଲି । ତୁମର ଏ ପ୍ରଥମ ଉଦ୍ୟମରେ ତୁମେ ପୂର୍ଣ୍ଣ ମିତ୍ରାକ୍ଷର ଛନ୍ଦରେ କୃତକାର୍ଯ୍ୟ ହେବା ଆଶାର ବିଷୟ । ଏହା ଛଡ଼ା ରଚନା ସରଳ ଓ ମଧୁର ହୋଇଅଛି । ଚେଷ୍ଟା ଓ ସାଧନା କଲେ ତୁମେ ଦିନେ ଜଣେ କୃତୀ କବି ହୋଇ ପାରିବ ।

× × × × ×

ଆଶୀର୍ବାଦକ
(ସ୍ୱାଃ) ଗୋପାଳଚନ୍ଦ୍ର ପ୍ରହରାଜ ।

---

ନବୀନ ପତ୍ରିକାରୁ—

'କାଳଯାତ୍ରୀ' ଲେଖକ—ଶ୍ରୀ ବଳଭଦ୍ର ପଟ୍ଟନାୟକ, ରମ୍ଭା । ଆକାର କ୍ରାଉନ ୧।୧୬।୨୮ ପୃଷ୍ଠା ।—ମୂଲ୍ୟ ପାଞ୍ଚ ପଇସା.........

ବହିଟି ଅତି ଛୋଟ । ଚିଲିକାସ୍ଥ କାଳିଯାତ୍ରୀ ଗଡ଼ର ମାହାତ୍ମ୍ୟ ବିଷୟ ନେଇ ଲେଖକ ଗୀତାକାରରେ ବର୍ଣ୍ଣନା କରିଛନ୍ତି । ଲେଖକଙ୍କ ଏହା ପ୍ରଥମ ଲେଖା ହେଲେ ସୁଦ୍ଧା ସ୍ଥାନେ ସ୍ଥାନେ ଭାଷା ଲଳିତ ଓ ପ୍ରାଣମୟ ହୋଇଅଛି ।

"ମନେ ଅଛି ଦିନେ ଯବନ ସମ୍ରାଟ
ବଙ୍ଗ ଅଭିଯାନକାଳେ,
ନତଶିରେ କୃପା— ଭିକ୍ଷା ମାଗିଥିଲେ
ଆସି ଓଡ଼ିଆର ଦ୍ୱାରେ ।"

× × × × ×

"ଦିନେ ଥିଲା ଆମ ଓଡ଼ିଶା ରାଜ୍ୟ
ସଂସାର ଭିତରେ ସାର,
ଘରେ ଘରେ ନିତି କେତେ ସୁନା, ରୁପା
ହେଉଥିଲା କାରବାର ।"

ଆଶା ହୁଏ, ଭବିଷ୍ୟତରେ ବଳଭଦ୍ର ବାବୁ ଜଣେ ସୁନ୍ଦର ଲେଖକ ହେବେ ।

---

Berhampur,
(Ganjam)
The 1st February, 1931.

I knew Sriman Balabhadro Patnaik Mahasayo as a promising student of the Board Elementary School, Rambha, while I was the Sub Assistant Inspector of Schools of the Chatrapur Range. Recently, I am very glad to see his poem "Kalijayi." The style is fluent and the ideas are ennobling. It augers a bright future of the author, who has the good fortune of residing at Rambha, the unique store-house of natural beauty.

Sd. S. Otta
Assistant, Government Secondary
Training School,
Berhampur.

---

P. O. Bhadrak ( B. N. Ry.)
Chintamoni Mohanti, ( Dist ) Balasore.
Bhadrak Dated the 22nd. Feb. 1931.

କଲ୍ୟାଣବରେଷୁ !
ସ୍ନେହର ବଳଭଦ୍ର,

"କାଳଯାତ୍ରୀ" ପଢ଼ିଲି । ଥରକରେ ମନ ବୋଧ ହେଲା ନାହିଁ, ପୁଣି ଥରେ ପଢ଼ିଲି । ତୁମ୍ଭର ଅଦ୍ଭୁତ ନୈସର୍ଗିକ ଶକ୍ତିରେ ମୁଁ ଯେପରି ମୁଗ୍ଧ, ରଚନାର ଲଳିତ କାରୁକଳାରେ ସେହିପରି ଆତ୍ମବିସ୍ମୃତ, ତୁମ୍ଭର ମଧୁମୟୀ—ରସମୟୀ ଲେଖନୀ ସାରସ୍ୱତ ପୁଷ୍ପାସ୍ତୃତ ହେଉ । ମୋର କାମନା । ଆଶା କରେଁ, ତୁମ୍ଭେ ଅଭ୍ୟାସ ଅକ୍ଷତ ରଖି ମାତୃ-ସାହିତ୍ୟଭଣ୍ଡାରରେ ରତ୍ନ ସଞ୍ଚୟ ଚେଷ୍ଟାରୁ ବିରତ ହେବ ନାହିଁ । ମୋର ଆଶୀର୍ବାଦ ଗ୍ରହଣ କର । ତୁମ୍ଭେ ଯୋଗ୍ୟ ପିତାଙ୍କର ଯୋଗ୍ୟ ପୁତ୍ର ଏବଂ ଯୋଗ୍ୟ ବଂଶର ଯୋଗ୍ୟ ବଂଶଧର । ତୁମ୍ଭର କବିତାଗୁଡ଼ିକ ସ୍ୱଚ୍ଛ ଜାହ୍ନବୀଧାରା ପରି ବହି ଯାଇଅଛି । ଭାବ ସରଳ ଏବଂ ସବଳ ।

ତୁମ୍ଭର
ଚିର ଶୁଭାନୁଧ୍ୟାୟୀ
(ସ୍ୱାଃ) ଶ୍ରୀ ଚିନ୍ତାମଣି ମହାନ୍ତି ।

—

# ଅଭିମତ

ରମ୍ଭାନବାସୀ ଶ୍ରୀଯୁକ୍ତ ବାବୁ ବଳଭଦ୍ର ପଟ୍ଟନାୟକଙ୍କ ପ୍ରଣୀତ 'ବୀରନାରୀର' ପାଣ୍ଡୁଲେଖ୍ୟ ପାଠ କରି ମୁଗ୍ଧ ହେଲି । ଏହା ରମଣୀ ଶିକ୍ଷାର ଅତି ଅପୂର୍ବ ଓ ଉପାଦେୟ ଗ୍ରନ୍ଥ ବୋଲି ବୋଧ ହେଲା । ଦେଶୀୟ ଭାବରେ, ଦେଶୀୟ ରୀତି, ନୀତି ଓ ଧର୍ମ ବିଷୟରେ, ଦେଶୀୟ ଆଚାର, ବ୍ୟବହାର ଏବଂ ସ୍ୱାସ୍ଥ୍ୟସ୍ୱଭାବରେ କନ୍ୟା, ଭଗିନୀ ଏବଂ ସ୍ତ୍ରୀଙ୍କୁ ଶିକ୍ଷିତା କରିବାକୁ ହେଲେ ଏହି ଗ୍ରନ୍ଥ ପାଠ ଅବଶ୍ୟ କର୍ତ୍ତବ୍ୟ । ରମଣୀମାନେ ଯାହା ପାଠ କଲେ ଗୃହକର୍ମରେ ସୁଦକ୍ଷା, ସଂସାରରେ ନିପୁଣା, ଆଚାରରେ ପବିତ୍ରା ଏବଂ ଜ୍ଞାନରେ ବିଭୂଷିତା ହେବେ, ସେ ସମସ୍ତହିଁ ଏଥିରେ ପ୍ରଦର୍ଶିତ । ଲେଖକଙ୍କର ନୈପୁଣ୍ୟ ସର୍ବଥା ପ୍ରଶଂସାର୍ହ ।

କାଳୀଗଳି, କଟକ
୨୬।୮।୧୯୩୧ } (ସ୍ୱା) ଶ୍ରୀ ଶଶିଭୂଷଣ ରାୟ ।

———

B. C. Das.
Joint Sub Registrar

Berhampore,
( Ganjam Dist. )
Dated 30-10-1931.

ଅଦ୍ୟ ଶ୍ରୀମାନ୍ ବଳଭଦ୍ର ପଟ୍ଟନାୟକଙ୍କ ନବପ୍ରକାଶିତ 'ବୀରନାରୀ' ପୁସ୍ତକଟି ଉପହାରସ୍ୱରୂପେ ହସ୍ତଗତ ହେଲା । ପୁସ୍ତକଗତ ବିଷୟଗୁଡ଼ିକ ପୌରାଣିକ ଓ ଐତିହାସିକ । ତାହା ଉତ୍କଳୀୟ ଲେଖକମାନଙ୍କଦ୍ୱାରା କବିତା, ଉପନ୍ୟାସ, ଗଳ୍ପଛଳରେ ଏଥିପୂର୍ବରେ ପ୍ରକାଶ ପାଇଥିଲେ ମଧ୍ୟ

ଲେଖକଙ୍କ 'ବୀରନାରୀ' ସେମାନଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନୁହେ । 'ବୀରନାରୀ' ଆଜ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସମୟୋପଯୋଗୀ । ଗ୍ରନ୍ଥସମ୍ବଳିତ ନାରୀଚରିତ୍ରଚିତ୍ରଣରେ ଲେଖକ ବଡ଼ ସିଦ୍ଧହସ୍ତ । ଏହା ପୁସ୍ତକର ପ୍ରତି ଛତ୍ରରୁ ଜଣା ପଡ଼େ । ଏହି ପୁସ୍ତକଟି ଯେ କେବଳ ଉତ୍କଳୀୟ ନାରୀମାନଙ୍କ ଚରିତ୍ର ଓ କାର୍ଯ୍ୟକଳାପ ପରିମାର୍ଜ୍ଜନ କରିବାରେ ଉପଯୋଗୀ, ତାହା ନୁହେ; ବରଂ ପୁରୁଷଜାତିର ଦୃଷ୍ଟିପଥରେ ପୂର୍ବତନ ନାରୀମାନଙ୍କର ଆଦର୍ଶ ଚରିତ୍ର, ଆଦର୍ଶ ନିଷ୍ଠା, ଆଦର୍ଶ ବୀରତ୍ୱ ଚିତ୍ରଣପୂର୍ବକ ପୁସ୍ତକଟି ପୁରୁଷଙ୍କୁ ନାରୀ ଅନୁପାତରେ ତାର ସ୍ୱକର୍ତ୍ତବ୍ୟ ଶିକ୍ଷା ପ୍ରଦାନ କରି ସମାଜର ସର୍ବାଙ୍ଗୀନ ଉନ୍ନତି ଅବଲମ୍ବନ ସାଧନ କରିବାରେ ସକ୍ଷମ । ରଚନା ସର୍ବତୋଭାବରେ ଆଦରଣୀୟ ।

Sd. B. C. Das.

---

## ବୀରନାରୀ

ଲେଖକ—ଶ୍ରୀଯୁକ୍ତ ବଳଭଦ୍ର ପଟ୍ଟନାୟକ ।

ମୁଁ ଆପଣଙ୍କ ଲେଖା ପଢ଼ି ଅତ୍ୟନ୍ତ ଆପ୍ୟାୟିତ ହେଲି । ଭାବ ମଧୁର ଓ ପବିତ୍ର, ଭାଷା ସରଳ ଓ ମଞ୍ଜୁଳ ହୋଇଥିବାରୁ ମୋର ମନେ ଉତ୍କଳରେ ନାରୀ ଓ ନର ଆଦର ସହକାରେ ପାଠ କରି ସୁଖଶାନ୍ତି ଅନୁଭବ କରିବେ । ମୁଁ ଆପଣଙ୍କର ଲେଖା ଦେଖି ଯେତେ ଆନନ୍ଦ ଅନୁଭବ କଲି, ତାହା ଏ କ୍ଷୁଦ୍ର ଲେଖନୀରେ ଲେଖିବାକୁ ସ୍ଥାନ ନାହିଁ । ପ୍ରାଚୀନ ନାରୀମାନଙ୍କର ଆଦର୍ଶ ଜୀବନୀ ଲେଖା ହୋଇଥିବାରୁ ଜାତୀୟତା ଭାବ ନେଇ ମୋ ମନରେ ଗର୍ବର ଊର୍ମିମାଳା ଖେଳଗଲା । ମୁଁ ଆପଣଙ୍କୁ ଉତ୍ସାହ ଦେଉଅଛି, ପ୍ରାଚୀନ ନାରୀମାନଙ୍କର ଆଦର୍ଶ

ଜୀବନୀ ଲେଖି ଜଣେ ବଡ଼ ଲେଖକ ହେଉନ୍ତୁ । ବର୍ତ୍ତମାନ ଉତ୍କଳ ମହିଳା ସମାଜରେ ଶିକ୍ଷା ବିଷୟରେ ଯେଉଁ ଅବସ୍ଥା ଭୟଙ୍କର ହୋଇଅଛି, ମୁଁ ଭାବୁଛି ଭବିଷ୍ୟତକୁ ଇତିହାସ ରହିବ ନାହିଁ । ମୁଁ ଆଶା କରେଁ, ପୂର୍ବ ନାରୀମାନଙ୍କ ଯଶ ଓ କୀର୍ତ୍ତି ଲେଖି ଆପଣ ମୋ ଜାତିକୁ ଶିକ୍ଷା ଓ ଉତ୍ସାହ ଦେଇ ମତେ ଚିରବାଧିତା କରାଇବେ । ଇତି ।

। ସ୍ୱା । ଶ୍ରୀମତୀ ଚନ୍ଦ୍ରମଣୀ ଦେବୀ
ଆଗରପଡ଼ା
ଜି: ବାଲେଶ୍ୱର

---

## 'ବୀରନାରୀ'

ଲେଖକ—ଶ୍ରୀଯୁକ୍ତ ବଳଭଦ୍ର ପଟ୍ଟନାୟକ ।

ଏଥିପୂର୍ବେ ଲେଖକ 'କାଳଯାତ୍ରୀ'ନାମ୍ନୀ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ପ୍ରକାଶ କରିଥିଲେ । ଉକ୍ତ କାବ୍ୟର ଭାବ ଓ ଭାଷା ସରଳ ହୋଇଛି । ''ବୀରନାରୀ'' ଉତ୍କଳୀୟ ବାଳକ-ବାଳକା ତଥା ନରନାରୀଙ୍କ ସମୟୋ-ପଯୋଗୀ, ଏହା କିଏ ଅସ୍ୱୀକାର କରିବ ? ସୀତା, ସାବିତ୍ରୀ, ପଦ୍ମିନୀ, ସଂଯୁକ୍ତା ପ୍ରମୁଖ ବିଷୟାବଳୀ ପାଠକମାନଙ୍କ ଆଗରେ କିଛି ନୂତନ ନୁହେଁ; କିନ୍ତୁ ଲେଖକ ଏହି ଆଦର୍ଶସ୍ଥାନୀୟା ବୀରରମଣୀମାନଙ୍କ ଅସୀମ ବୀରତ୍ୱ, ଯଶ ଗାନ କରିବାକୁ ପ୍ରୟାସୀ ହୋଇ ବହିଟିକୁ ଯେ ରକମ ସରଳ, ସୁନ୍ଦର ଭାଷାରେ ଅନୁପ୍ରାଣିତ କରିଅଛନ୍ତି, ସେଥିନିମନ୍ତେ ଆମ୍ଭେମାନେ ଏହି ନବୀନ ଲେଖକଙ୍କୁ ଧନ୍ୟବାଦ ନ ଦେଇ ରହି ପାରୁ ନାହୁଁ ।

ବହିଟିର ମୂଲ୍ୟ ୫ ୦ ୳ (ଆଠଅଣା ମାତ୍ର)

—ନବୀନ—
୧ । ୧୬ । ୩୧

---

District Board's Office, Ganjam.

Proceedings of the President, District Board, Ganjam.

Saheb Meherban I Dastan
Sree Rama Chandra Mardaraja
Deo M. L. C.

× × × × × × ×

D. Dis 2526/D B -/1931/-
Dated 9-12-31.
Station Chatrapur

Read the following :–

(1) Application of Mr. Balabhadra Patnaik or of Editor, 'Biro Nari' for introduction of his books in Secondary Schools.

(2) N. P. C. No. 76 M of 9-12-31 of the D. E. O. GM.

## Order.

The Oriya Book "Biro Nari" published by Mr Balabhadra Patnaik is approved as a text in Secondary Schools.

By to H Ms of Bd. High and Middle Schools } Sd. K. S. Mudulier. *Secretary*

---

ପାରଳାଖେମଣ୍ଡି
କୁଶଳଂ ତେ ବର୍ଦ୍ଧତାଂ ନିତ୍ୟଂ ।　　　　　　　　୧୧ । ୧୬ । ୩୧.

ପ୍ରିୟତମ ବଳଭଦ୍ର,

ଦୁଇ ଦିନ ପୂର୍ବେ ତୁମ୍ଭର କରକମଳାଙ୍କିତ ପତ୍ର ଏବଂ ସ୍ୱରଚିତ ଦୁଇଖଣ୍ଡ ପୁସ୍ତକ ଲଭ ସାତିଶୟ ଆପ୍ୟାୟିତ ହୋଇଅଛି । ଆଶା କରେ, ଜଗଦ୍ଧାତା ଜଗଦୀଶ୍ୱର ତୁମ୍ଭର ଲେଖନୀରେ ସତତ ଅମୃତ ସେଚନ କରି ଅମ୍ଭମାନଙ୍କର ଉତ୍ତରୋତ୍ତର ଆନନ୍ଦ ବର୍ଦ୍ଧନ କରିବେ । ଏହାହିଁ ଏକ ମାତ୍ର ଆଶଂସା ।　　×　　×　　×

ସ୍ୱା: ଶ୍ରୀ ନୀଳକଣ୍ଠ ମିଶ୍ର

———

ନବୀନ ଖବରକାଗଜ ଦେଇଥିବା ମତ ।

'ବାଳଗୀତିକା' :—　　×　　×　　×

ଏହି ବହିର ଲେଖାରେ ଉତ୍କଳକବି ମଧୁସୂଦନଙ୍କ କବିତା ଛଟା ଦୃଷ୍ଟ ହୁଏ ।　×　×　ଏହା ବାଳକ ବାଳିକାଙ୍କ ପଠନ ନିମନ୍ତେ ଗୋଟିଏ ଉପଯୁକ୍ତ ବହି ।　×　×　×　×



*Approved by the Text Book Commitee of Madras for class use.*

---

# ଆତ୍ମ କଥା

"ଚିଲିକା, ତୋ ତୀର ବଙ୍କୁର ଲଳିତ
ସେହି ଛବିକିରେ ହେବ ଆଲୋକିତ,
ବାଣୀ-ଆବିର୍ଭାବ-ଯୋଗ୍ୟସ୍ଥଳ ଜାଣି
ଆଶ୍ରିବେ ତୋ ତୀର ବୁଧ କବି ଜ୍ଞାନୀ,
ହୋଇ ତୁ ତାଙ୍କର ବିହାର-ତଡ଼ାଗ
ଲଭିବୁ ଅଖିଳ-ଜନ-ଅନୁରାଗ ।"

—ରାଧାନାଥ—

ପ୍ରାକୃତିକସୁଷମାଶାଳିନୀ ଚିଲିକାର ତଟଦେଶରେ ଅବସ୍ଥିତ କବିଜନମନନୟନୋପଯୋଗୀ ରମ୍ୟ ଜନପଦଟିର ଅନିର୍ବଚନୀୟ ଶୋଭା କବିବରଙ୍କ ଉପରୋକ୍ତ ଉତ୍ପ୍ରେକ୍ଷାକୁ ସାର୍ଥକ କରୁଥିଲେହେଁ ଏଠାରେ କୌଣସି ବିଶିଷ୍ଟ ଧରଣର ଅନୁଷ୍ଠାନ ନାହିଁ, ଯାହା ଜଣେ କବି, ଲେଖକ ବା ସାହିତ୍ୟିକର ହୃଦୟ-ସଦ୍ମରେ କିଛି ଆଲୋକ ପ୍ରଦାନ କରିବ । ତଥାପି ଏହି ଗ୍ରାମଟିର ଗୋଟିଏ କୋଣରେ ପଡ଼ି ରହି ସାଧ୍ୟଗତ ଶ୍ରମ ଆଉ ଚେଷ୍ଟା ସତ୍ତ୍ୱେ ଯେଉଁ କେତେକ କାବ୍ୟକବିତାରାଜିରାଣୀକୁ ନିଜର କରି ଯାଇଛି ପୁଣି ସେବିଛି, ସେମାନଙ୍କ ମଧ୍ୟରୁ ଥୋକେ ପ୍ରକାଶ-

ସିଂହାସନର ଚତୁର୍ଥ-ସୋପାନରେ ପଦାର୍ପଣ କରିଥିବାରୁ ଅଜ୍ଞ ଏହି କ୍ଷୁଦ୍ର-ହୃଦୟକନ୍ଦରସ୍ଥ ବୃତ୍ତିଗଣ—ସୁଖଶାନ୍ତି—ତଥା ଆନନ୍ଦର ତରଙ୍ଗିଣୀଟି ସଂକ୍ଷୁବ୍ଧରବରେ ଉତ୍‌ଫୁଲ୍ଲ, ଉଦ୍‌ବେଳିତ ହୋଇ ଉଠିଛି ।

ଖଲ୍ଲିକୋଟ ଏବଂ ଆଠଗଡ଼ ରାଜ୍ୟଦ୍ୱୟର ସୁଦକ୍ଷ ଦେୱାନ ଅତୁଳନୀୟ-ମାତୃସାହିତ୍ୟ-ଅନୁରାଗୀ ଶ୍ରୀଯୁକ୍ତ ସଦାନନ୍ଦ ମହାନ୍ତି ମହୋଦୟଙ୍କୁ ପାଠକପାଠିକାଗଣଙ୍କ ଭିତରୁ ହୁଏତ ଅନେକେ ଜାଣନ୍ତି । ଏହି ସାଧୁପ୍ରାଣ ମହାନ୍ତି ମହାଶୟଙ୍କ ଏକାନ୍ତ ଆନୁକୂଲ୍ୟରୁ ଉକ୍ତ ବହି ଖଣ୍ଡିକ ମୁଦ୍ରିତ ହୋଇ ପାରିଥିବାରୁ ଲେଖକ ତାଙ୍କ ନିକଟରେ ନିଜର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ରମ୍ଭା
୩୦-୪-୧୯୩୩ } ଶ୍ରୀ ବଳଭଦ୍ର ପଟ୍ଟନାୟକ ।



# କବିତାମୃତ



## ପଦ୍ୟଧାର

— ୧ —

ବନ୍ଦେ !

ମଙ୍ଗଳମୟ ତବ          ପ୍ରେମବନ୍ଧନ ବନ୍ଦେ
ମଙ୍ଗଳମୟ ତବ ବିଶ୍ୱବିଧାନ । [ଦୋହା]

ଆହା କି ସୁନ୍ଦର କୁଞ୍ଜ କାନନ ଛବି,
ନୀଳ ଗଗନତଳେ ମଞ୍ଜୁ କନକ ରବି,
ନାଚି ଉଠେ ଅନ୍ତର
ଶ୍ରବଣେ ନିରନ୍ତର
ବନ, ଗିରି, ଲତାକୋଳେ ବିହଙ୍ଗମଗାନ । ୧ ।

ସିନ୍ଧୁ ମଧ୍ୟରେ ଆହା ଗାଏ କି ସୁଧା ଗୀତ,
ସେ ତାନ ଶ୍ରବଣେ (ପ୍ରାଣେ) ଉଦେ କି ମୋହନ ପ୍ରୀତି,
ବିଶ୍ୱଭୁବନ ଲୀଳା,
ସ୍ୱର୍ଗସମ୍ପଦ ଖେଳା,
ତୁମରି ପ୍ରସାଦ ଅହୋ କରୁଣାନିଧାନ । ୨ ।



—୨—

ମଧୁର ଏ ନବ ମଧୁ ରଜନୀ,
ମୋହନ ସମ୍ପଦ ଏ ମଧୁ ଯାମିନୀ,
ହସି ହସି ଭାସି ଆସେ ଉପବନ ମାଧୁରୀ,
ଝଣି ଝଣି ଫୁଟି ଉଠେ କୋଟି ଭୁବନଶିରୀ,
ଧୀରେ ଧୀରେ ହସି ଉଠେ ସୋହାଗେ ମେଦନୀ [ଘୋଷା] ।

ତରଳତାରକାମୟୀ ମଞ୍ଜୁ-ଗଗନତଳେ
ଚଳ ଚଳ ଧୀରେ ଧୀରେ ନୀଳ ଜୀମୂତକୋଳେ
ବରଷି ପିୟୂଷଝଣି ହସେ ନିଶାମଣି,
ମୁକ୍ତ ତଟିନୀ କୋଳେ ଭାସି ଉଲ୍ଲାସଭରେ
ହସି ହସି ପ୍ରେମଲୋଲେ
ଲୋଟେ କୁମୁଦିନୀ— ।

—*—

—୩—

ନବନୀରଦବରନ ଘନଶ୍ୟାମମୂରତି ବନବିହାରୀ
ଶ୍ରୀ ମଧୁସୂଦନ ହେ । [ଘୋଷା]
ଭବମାୟାଭଞ୍ଜନ,
ଦୁଃଖି-ହୃଦରଞ୍ଜନ,
ସୁହୃଦଜନରଞ୍ଜନ ମୋହନ ହେ । ୧

ବ୍ରଜଜନଚନାଗର,
ହେ ରସିକଶେଖର,
ବଂଶୀତ-ମୁରଲୀ-ବଦନ ହେ ୨

ସୁଧାହୃଦୟାନନ୍ଦ—
କାରୀ, ଜୟ ଶ୍ରୀ ନନ୍ଦ—
ନନ୍ଦନ, ଅରବିନ୍ଦ-ଚରଣ ହେ । ୩ ।

—*—

—୪—

ସରଗ ସୁଷମା ଜିବା ସରଗ ସମ୍ପଦ ଯେଣ,
ଅବନୀମଣ୍ଡଳେ ସାର ଏ ପୁଣ୍ୟ ଭାରତଭୂମି । [ଘୋଷା]
ଶ୍ୟାମଳ ନିର୍ମଳ ନଭେଁ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା
ଛାଳନ୍ତି ଯାର ବଦନେ ଉଜ୍ଜ୍ୱଳ କିରଣଧାରା । ୧ ।
ଜଳେ ତ୍ରିଭୁବନ ତାତ ଯା କୁଞ୍ଜବିପିନେ ବସି
ଗୋପାଳ ବାଳକବେଶେ ବାଇଲେ ମୋହନବଂଶୀ । ୨ ।
ପ୍ରକୃତ ଶୋଭାସମ୍ପଦ ଯା ବକ୍ଷେ ନିତ୍ୟ ନୂତନ,
ବନ ଗିରି, ଲତାକୁଞ୍ଜେ ଶ୍ୟାମଳତ ଅପଘନ । ୩ ।

—*—

—୫—

ଜୟ ଯଦୁନନ୍ଦନ-ବଂଶୀବିମୋହନ,
ଗୋକୁଳକଳାକର ଭଜ ଦଇତାରି । [ଘୋଷା]
ଶ୍ରୀମତୀପ୍ରାଣଧନ, ମନ୍ଦରଗିରିଧର,
ଯଶୋମତୀ ଜୀବନ, ରାସରସିକବର,
ପ୍ରିୟ ଗୋପିନୀଜନ ସେବିତ ବ୍ରଜବନ—
ନିତ୍ୟ ବିନୋଦନକାରୀ । ୧ ।
ସୁନ୍ଦର ସୁଚକ୍କଣ ମଞ୍ଜୁଳ ପୀତପଟ,
ସାନ୍ଦ୍ର କୁସୁମହାରଶୋଭିତ କଟିତଟ,

ତ୍ରିପୁର ପୁରନ୍ଦର— ବଜ୍ରୀ, ଶରବର,
ଗୋପୀଜନ-ମାନସହାରୀ । ୨ ।

ସୁରଭି-ସୁବାସିତ—ଶୁଭ୍ର-ଯମୁନାକୂଳ
ଉପବନେ ସୁଶୀତଳ ସ୍ନିଗ୍ଧ କଦମ୍ବମୂଳ
କୁଞ୍ଜକୁଟୀରବାସୀ, ମନ୍ଦ-ମଧୁରହାସୀ,
ବଂଶୀବଦନ ଶ୍ରୀମୁରାର । ୩ ।

ଶ୍ୟାମପଦସେବୀ ଦୀନ ବଳଭଦ୍ର ଭଣିତ,
(ସେ ତ) ଅନୁଦିନ ବ୍ରଜବନ କୁସୁମେ ବିଭୂଷିତ,
ଭଜ ମନ ଗୋବିନ୍ଦ-ପଯୂର-ଅରବିନ୍ଦ
ପାପତାପଭଞ୍ଜନକାରୀ । ୪

—*—

—୬—

ଘୋଷଇ ଏ କି ଅମିୟ ତାନ
ମଧୁର-ସଙ୍ଗୀତ-ଛନ୍ଦେ ? [ଘୋଷା]

କୁଞ୍ଜରାଣୀର ନିତ୍ୟ ନୂତନ—
ପ୍ରେମେ ଅନୁଦିନ
ହୋଇ ନିମଗନ,
ଢାଳଇ ଏ କି ଅମୃତଧାର
ଅପାର ହୃଦ ଆନନ୍ଦେ ? ୧ ।

କାନନେ ଗିରିକନ୍ଦରେ ନିତ
ଗାଇ ସେ ପ୍ରୀତ
ମଞ୍ଜୁଳ ଗୀତ,
ଭସାଏ ଏ କି ପୁଣ୍ୟ ସରିତ
ସ୍ନିଗ୍ଧ ଶୀକର ଗନ୍ଧେ ? । ୨ ।

—*—

—୭—

ହରିପଦଧୂଳି ଅଙ୍ଗେ ହୋଇ ବୋଳି
ବୋଲ ସର୍ବେ ହରି ହରି । [ଘୋଷା]
ହରି ପିତା ମାତା,
ହରି ଧନ-ଜନ-ଜ୍ଞାନ-ଦାତା,
ହରିପଦେ ମନ ବଳାଇଲେ ଧନ
ଏ ଭବସାଗରୁ ହେବୁ ପାରି । ୧ ।
ହରି ବିନୁ ଆନ
ଗତି ତୋର ଭବେ ନାହିଁ ଜାଣ,
ଏ ମାୟା ସଂସାରେ, ଘୋର ଅନ୍ଧକାରେ,
କେହି ତ ନୁହେ କାହାରି । ୨ ।
ମାନ ଅପମାନ,
ଯଉବନ ମଦ, ଏ ଗୁମାନ,
ଯେତେ ସୁଖରାଶି କାଳସ୍ରୋତେ ଭାସି
ଯିବ, ନଷ୍ଟେଁ ବୋଲ ହରି ହରି । ୩ ।

—*—

—୮—

ରାଜରାଜେଶ୍ୱର ମୋ ଜୀବ ଈଶ୍ୱର
ବିରାଜ ହୃଦୟ-ଆସନେ । [ଘୋଷା]
ବିପଦସଙ୍କୁଳ ଭବ-ପାରାବାରେ
ପଡ଼ି ଅହରହ ଡାକୁଛି କାତରେ,
ପରାଣ ସବିତା ହେ ପରମ ପିତା !
(ବାରେ) ଦେଖାଦିଅ ଆସି ସ୍ୱପନେ । ୧ ।

ମୂଢ଼ମତି ମୁହିଁ ଅବୋଧ ବାଳକ,
ଦିଅ ଦିବ୍ୟଜ୍ଞାନ ବିମଳ ଆଲୋକ,
ମହାତ୍ମ୍ୟ ତବ ଅସୀମ ମହିମା
ବ୍ୟାପିଛି ବିଶାଳ ଭୁବନେ । ୨ ।

—*—

—୯—

"ବଂଶୀ ! ତୋ ଗୁଣ ମୁଁ ଜାଣେ । [ଘୋଷା]

କୁଳବତୀଙ୍କର ମତିକି ମୋହିଲୁ,
ଛନ୍ଦା ପଦଯୁଗେ ମନ ମଜାଇଲୁ,
ଶ୍ୟାମ ପ୍ରେମରସେ ଜ୍ଞାନ ହଜାଇଲୁ
ତୋ ଶ୍ରୁତି ମଧୁର ତାନେ । ୧ ।

ଦିବାରାତି ରବିସୁତାତୀରେ ତୁହି
ରାଧା ନାମ ଘୋଷି ଭୁଲାଇ ଭୁଲାଇ,
ରସବତୀ ହୃଦୟମୂଳୁ ଭଙ୍ଗାଇ
ଦେଲୁ ତୋର ସ୍ୱରବାଣେ ।" । ୨ ।

—*—

—୧୦—

ବ୍ରଜନନ୍ଦନାଗର, ଶ୍ରୀ ବଂଶୀଧାରୀ
ଗୋପୀଜନବଲ୍ଲଭ, କୁଞ୍ଜବିହାରୀ । [ଘୋଷା]
କଂସଦାନବହର, ମନ୍ଦରଗିରିଧର,
ନନ୍ଦଦୁଲାଲ, ରାଧା-ପ୍ରେମଭିକାରୀ ।
ନିକୁଞ୍ଜ-ସୁଧାକର, ଶ୍ରୀରସରାଜବର;
ବାଲଗୋପାଳରୂପ, ଜୟ ମୁରାରି । ୧ ।

କଦମ୍ବମୂଳଗ୍ରୀ, ଶିଖଣ୍ଡଚୂଳଧାରୀ,
ରାଧାରମଣ ବ୍ରଜବିନୋଦକାରୀ ।
ମନ୍ଦାର ହାରମଯ୍ୟ, ସ୍ମନରବର ଜୟ୍ୟ,
ଛନ୍ଦାଚରଣ, ଗୋପୀହୃଦୟହାରୀ । ୬ ।

—*—

—୧୧—

ଅଗତିର ଧନ ! ମୋ ଜୀବଜୀବନ
ତୁମେ ଏ ଜଗତକାରଣ । [ଘୋଷା]
ତୁମେ ନିରାକାର, ସକଳ ଆକାର,
ତୁମେ ନିର୍ବିକାର, ସକଳ ବିକାର,
ତୁମେ ହେ ଦେବତା, ପରମ ସତ୍ତା,
ତୁମେ ଭବ-ପାପ-ତାରଣ । ୧ ।
(ତୁମେ) ଘନ ଅନ୍ଧକାରେ ଆଲୋକର ରେଖା,
ଘୋର ଦୁଃଖେ ସୁଖ-ସ୍ୱପନର ଦେଖା,
ତୁମେ ହେ ଅରୁଣ, ତୁମେ ହେ କରୁଣ,
ନମେ ହେ ବିପଦବାରଣ । ୨ ।



ଓଁ

# ଅର୍ଚ୍ଚନା

"ଜଗତର ଆଦି-ଅନ୍ତ-ପରମକରତା,
ପରମେଶ୍ୱର, ସର୍ବ-ଶୁଭ-ମଙ୍ଗଳବିଧାତା,
ବିଶ୍ୱଗୁରୁ, ବିଶ୍ୱପିତା, ବିଶ୍ୱପୂଜନୀୟ,
ଅନନ୍ତ ମହିମା ତବ ବର୍ଣ୍ଣେ ମହାଜ୍ଞାନୀ,
ସେ ମହାମହିମାବଳେ ଭୁବନେ ଭୁବନେ
ଖେଳଇ ଆହା କି ପ୍ରାଣଉନ୍ମାଦନାମୟୀ—
ଅପାର୍ଥିବ-ସୁଖସୁଧା-ସଞ୍ଜୀବନୀଧାରା !
ତୁମ୍ଭର ଆଦେଶେ ଊର୍ଦ୍ଧ୍ୱେ ଚାଲଇ ତପନ
ଜଗତ-ଆଲୋକ-ଦିବ୍ୟ·ପ୍ରଭା-ସମୁଜ୍ଜ୍ୱଳ ।
ଦିବସ ଯାମିନୀ କିବା ରଜନୀ ସଙ୍ଗତେ
ଦିବସର ପ୍ରେମମୟ ଲୀଳା-କୁତୂହଳ
ପ୍ରକୃତିଭବନେ କ୍ଷୀଣ ସନ୍ଧ୍ୟାର ଆଲୋକେ,
କିବା ବିଶ୍ୱ ଚରାଚରେ ପ୍ରକୃତିର ଛାୟା
ମୋହନ-ସମ୍ପଦମୟ-ନିସର୍ଗସୁନ୍ଦର
ସର୍ବ ବିଭେ ଉଦ୍ଭାବିତ ତୁମର ପ୍ରସାଦୁଁ ।
ତୁମ୍ଭର ଆଦେଶେ ମନ୍ଦ୍ର-ସଙ୍ଗୀତ-ଝଙ୍କାର
ଘୋଷେ ବୀଚି-ଉଦ୍ବେଳିତ-ଭୀମ-ପାରାବାର,
ପ୍ରକୃତିର ଯେଉଁ ଘୋର-ଗମ୍ଭୀର ମୂରତି

ଦର୍ଶନେ ହୃଦୟ ମମ ହୁଏ ଆନ୍ଦୋଳିତ
ଅନନ୍ତ-ଭାବନାସିନ୍ଧୁ ଅଗାଧ ସଲିଳେ ।
ଯାହା ମୁଁ ଦେଖଇ ବିଶ୍ୱେ ସୁନ୍ଦର ପାବନ
ମୁଦ୍ରିତ ବା ଉନ୍ମୀଳିତ ଏ ବେନି ନୟନେ,
ଯାହା ମୁଁ ଶୁଣଇ ବିଶ୍ୱେ ଲଳିତ ମୋହନ
ଜାଗ୍ରତ ବା ନିଦ୍ରାଗତ ଏ ବେନି ଶ୍ରବଣେ,
ଯାହା ମୁଁ ଭୁଞ୍ଜଇ ନିତ୍ୟ ସମ୍ପଦେ ବିପଦେ
ପ୍ରାଣର ଦେବତା ତୁମ୍ଭେ ଦେଇଛ ସବୁର,
ତୁମ୍ଭର ପବିତ୍ର କୃପା-ସ୍ରୋତ ଅଂ[illegible]ସର
କ୍ଷୁଦ୍ର କ୍ଷୁଦ୍ର ଅତି କ୍ଷୁଦ୍ର ଏ ଜୀବନ-ପୋତ
ପରମ ତୃଷ୍ଣାସେ ବିଶ୍ୱେ ହେଉଛି ଧାବିତ,
ନିରବେ, ଅପ୍ରକାଶେ, ଅତୀବ ଗୋପନେ,
ବିପଦ-ଆବର୍ତ୍ତ-ଭ୍ରାନ୍ତ ଥିଲେ ନାହିଁ ମନେ,
କିନ୍ତୁ ଯେଉଁ ଦିନ ତୃଷା ଦେଖିବ ଅଗ୍ରତେ
କାଳର କରାଳବାତ୍ୟା ଉତ୍କଟ ମୂରତି
ବୁଡ଼ିବ ନିଶ୍ଚୟ ପୋତ ଅଗାଧ-ସଲିଳେ ।
ଭାଙ୍ଗିବ ଏ ଜୀବନର ଅମୃତ ସ୍ୱପନ,
ବେନି ନେତ୍ର ହେବ ଚିରତାମସମଗନ ।
ଚୌଦିଗେ ଘୋଟିବ ଘନ-ଘୋର-ଅନ୍ଧକାର,
ଚୌଦିଗେ ଶୁଭିବ ଘୋର-ଆର୍ତ୍ତ-ହାହାକାର,
ଶୂନ୍ୟ ମହାଶୂନ୍ୟ ପ୍ରାୟ ହୋଇବ ପ୍ରତୀତ
ଚପଳା-ପ୍ରତିମ ଏହି ବିଶ୍ୱଚରାଚର ।
ମରଣ ସେ ବିଶ୍ୱେ ଘୋର ବିଷମ ସମସ୍ୟା
ଲୁପ୍ତ ଯହିଁ ଜୀବନର ସକଳ ସମ୍ପଦ ।

କିବା ବିଦ୍ୟା, ବୁଦ୍ଧି, ଧନ, ବିକ୍ରମ, ସାହସ,
କିବା ପ୍ରାଣେ ଈଶ୍ୱରଙ୍କ ଶକ୍ତିର ବିକାଶ,
ଶୈଶବର ଲୀଳା ଖେଳା ଅତୀବ ମଧୁର,
କିବା ହୃଦ୍ୟଚପଳତା ନବଯୌବନର,
ବାର୍ଦ୍ଧକ୍ୟ ଜୀବନେ ପୁଣ୍ୟ-ଭକ୍ତିର ସଞ୍ଚାର,
ସର୍ବ ବିଶ୍ୱେ ଲୁପ୍ତ ସେହି କରାଳ-ତାମସେ ।
ତରିବାକୁ ସେହି ମୃତ୍ୟୁ ଭୀମ ପାରାବାର
ଏ ଜୀବନପୋତେ ତୁମ୍ଭେ ଅଟ କର୍ଣ୍ଣଧାର,
ତବ ଅନୁକମ୍ପାବଳେ ଲଭିବ ନିସ୍ତାର ।
ଶୋଭାର କୁସୁମ ଫୁଟେ ବନେ, ଉପବନେ,
ପ୍ରକୃତିରାଣୀର ଶିରୀ-ସମ୍ପଦ-ଭବନେ;
ମଧୁପାନେ ମଧୁକର ହୋଇଣ ଉନ୍ମତ୍ତ
ପିଅଇ ଆଦରେ ପୁଷ୍ପମଧୁ ଅବିରତ ।
ବିଭୁପଦସେବୀ ତାହା ଗୋଟାଇ ଆଦରେ,
କରଇ ଅର୍ପଣ ତବ ପବିତ୍ର ପଦ୍ମରେ;
ନାହିଁ ଯେଉଁ ପୁଷ୍ପେ ମଧୁ ସୌରଭ କିଞ୍ଚିତ,
ହୁଏ ସେହୁ ତରଧରାଧୂଳିବିଲୁଣ୍ଠିତ ।
ପ୍ରସ୍ଫୁଟିତ ପୁଷ୍ପତୁଲ୍ୟ ପ୍ରାଣର ବାସନା,
ସୁଖର ସ୍ୱପନେ ଏହି ସଂସାର-ଉଦ୍ୟାନେ,
ଅବନୀ ଦେବଙ୍କର ସୁଧା ସାରସତ୍ତ୍ୱ ପାନେ
ବିକଶିତ ଏହି ପ୍ରାଣ-କୁସୁମକଳିକା ।
ଅଛୁ ଯଦି ବିଶ୍ୱ-ପ୍ରୀତି-ଗନ୍ଧେ ସୁବାସିତ,
ଏ ଜୀବନ ଅନ୍ତେ ତବ ପଦେ ସମର୍ପିତ
ହେବ ସେହି ମୃତ୍ୟୁରୂପୀ-ବିଶ୍ୱ-ସେବକରେ ।

ସ୍ୱାର୍ଥବିଜଡ଼ିତ ବିଶପ୍ରୀତି ଭୁଚ୍ଛ ପ୍ରାଣ
ବୃନ୍ତଚ୍ୟୁତ ବିଦଳିତ ପ୍ରସୂନ-ପ୍ରମାଣ ।
ମୃଦ୍ଧ୍ୟୁ ମୋର ପୂଜନୀୟ ଆଦିମ ଜନନୀ,
ଯାର ଗର୍ଭ ଅତୀତର ସୁଦୂର ପ୍ରାଙ୍ଗଣେ
ଜନ୍ମ ଲଭି ଏହି ପୁଣ୍ୟ ଭାରତମଣ୍ଡଳେ
ନୈସର୍ଗିକ ସ୍ୱାଧୀନତା ସାନୁମାନଚୂଳେ
ସ୍ୱର୍ଣ୍ଣାସନେ ବସିଥିଲ ସାଧନାର ବଳେ ।
ଅପ୍ରମିତ ଗଜ, ଅଶ୍ୱ, ଅସଂଖ୍ୟ ପଦାତି—
ସୁସଜ୍ଜିତ-ଭୀମ-କୁରୁ-ବିରାଟ-ବାହିନୀ
ଯେଉଁକାଳେ ପଣ୍ଡୁସୁତ ସେନା ଅଭିମୁଖେ
ରଣୋନ୍ମାଦେ ଦ୍ରୁତପଦେ ଥିଲା ଉଦ୍ଧାବିତ,
ଅବତର ସେହି ଘୋର ସମର ଅଙ୍ଗଣେ
କର୍ଣ୍ଣ, ଦ୍ରୋଣ, ଭୀଷ୍ମ ଆଦି ସପ୍ତ ମହାରଥୀ
ଶୋଣିତେ ରଞ୍ଜିତ କରି ହସ୍ତିନା ନଗରୀ
କୁରୁକୁଳଚୂଡ଼ାମଣି ଦୁର୍ଯ୍ୟୋଧନ ହୃଦେ
ପାଣ୍ଡବ-ଦହନ-ଆଶା-ଘୋର-ଦାବାନଳ
କଲ ନିର୍ବାପିତ କୋଷ୍ଠୀ-କେଶରବିକ୍ରମେ
ହିଂସାପ୍ରଣୋଦିତ-ତୀକ୍ଷ୍ଣ କୃପାଣସଲିଳେ ।
ଶକ୍ତିର ସେ ବଳ, ବୀର୍ଯ୍ୟ, ରକ୍ତବିନ୍ଦୁଧାରା
ନ ଥିଲା ଧାବିତ ଯଦି ଏ ଧମନୀଧାମେ
ସୌଧପୀଠେ ବସି ଦରିଦ୍ର କୁଟୀରେ
ସନ୍ତାପିତ ପ୍ରାଣ ମମ ଉଠିଥିଲା ନାଚ
ଶୁଣି ସେହି ପୁଣ୍ୟମୟ ହୃଦ-ଉଲ୍ଲାସକ
ପାଣ୍ଡବବିଜୟବାର୍ତ୍ତା କୌରବ ସମରେ

ବିଶ୍ୱଶାନ୍ତି ପ୍ରତିଷ୍ଠିତ ଧର୍ମର ଯାଗରେ ।
ଘୋର ନିଦ୍ରାଭୋଳେ ଶୋଇ ଜନ୍ମଜନ୍ମାନ୍ତରେ
ବହୁବାର ସେହି ଆଦି-ଜନନୀ* ଜଠରେ
ସ୍ୱପ୍ନର ପ୍ରତିମା ପ୍ରାୟ ସେ ଶିରୀ ସମ୍ପଦ
ହରାଇଛୁ ଅତୀତର ଘୋର-ଅନ୍ଧକୂପେ ।
ଶସ୍ୟଶ୍ୟାମଳମୀ ଏହି ଭାରତ ହୃଦୟେ
ଅତୀତର ଶୁଭ୍ରତୋୟା ବହଇ ଯମୁନା,
ଯାର ତୀରକୁଞ୍ଜବନ ପୁଣ୍ୟ ବ୍ରଜଧାମେ
ପ୍ରେମମୟୀ ଶତ ଗୋପ ଅଙ୍ଗନା ହୃଦୟେ
ଖେଳୁଥିଲା ଶ୍ୟାମପ୍ରୀତି ମନ୍ଦାକିନୀଧାରା ।
ଅଛି ସେହି ଉଜ୍ଜୟିନୀ, ମଗଧ, ମିଥିଳା,
ଆର୍ଯ୍ୟଭୂମି ଇନ୍ଦ୍ରପ୍ରସ୍ଥ, ହସ୍ତିନା ନଗରୀ,
ଅଛି ମହାକୁରୁ-ରଣଘଟ୍ଟତ ସ୍ଥଳୀ,
ଅଛି ଆର୍ଯ୍ୟ-ଧରାଖଣ୍ଡ ବୀରେନ୍ଦ୍ରସେବିତ,
କିନ୍ତୁ ଭାରତ ମାତାର କୋଟି ସନ୍ତାନହୃଦୟେ
ନାହିଁ ଆଜ ଅତୀତର ସେ ଘୋର ବିକ୍ରମ,
ନାହିଁ ପୁଣି ସେ ଅଦ୍ଭୁତ ଶକ୍ତିର ସାଧନା ।
ପ୍ରାଣର ଦେବତା ମମ ଅନାଦିକାରଣ,
ଭାରତର ଏହି ଘୋର ବିଷମ ଦୁର୍ଦ୍ଦିନେ
ଶିଖାଅ ସେ ସାଧନାର ମୋହନ ମନ୍ତ୍ର,
ବିଶ୍ୱପ୍ରୀତି ସୁଧାରସେ ପୂରାଅ ଅନ୍ତର,
ହୃଦୟକନ୍ଦରେ ମମ ଖେଳ ନିରନ୍ତର

---

* ଆଦିଜନନୀ—ମୃତ୍ୟୁ ।

ନବଶକ୍ତି, ଉଦ୍ୟମର ଅମୀୟ ନିର୍ଝର ।
ତୁମ୍ଭେ ସତ୍ୟ, ତୁମ୍ଭେ ଧର୍ମ, ଭକ୍ତ-ମନରଞ୍ଜନ,
ତୁମ୍ଭେ ଦେବ ଭବମାୟାବିପଦଭଞ୍ଜନ,
ତୁମ୍ଭର ପ୍ରସାଦେ ପୂର୍ଣ୍ଣ ଜଗଜ୍ଜଗନ୍ତର ।
ସୋଦର, ଭଗିନୀ, ବନ୍ଧୁ, ଜନକୀ, ପିତର,
ପ୍ରିୟ ଦାର ସୁତ ଆଦ ଆତ୍ମପରିବାର
ପ୍ରେମର ସମ୍ପଦେ ଯେତେ ପୂରିତ ଏ ଭବ,
ସେ ସକଳ ଅଟେ ଦେବ ତୁମ୍ଭର ବିଧାନ ।
ତବ ପଦେ ମିଳେ ମୁକ୍ତି ଅଖଣ୍ଡ ସମ୍ପଦ,
ମୁକ୍ତିର ସେ ଉପଯୋଗ ସ୍ୱର୍ଗୀୟ ସୋପାନ
ମଣଇ ମୁଁ ସମ୍ପଦର ମଧୁରା ଆସନ,
ତବ ପୁଣ୍ୟମୟ ପଦ ଧ୍ୟାୟି ଅନୁଦିନ
ତୁଟୁ ଏ ସଂସାରମାୟା ନିଗଡ଼ ବନ୍ଧନ,
ହୃଦୟକ୍ଷେତ୍ରେ ଖେଳୁ ସଦା ତରଳବାମୟ-
ଶାନ୍ତିସୁଧାତରଙ୍ଗିଣୀ ଘୋର ଅବାରିତ ।
ଭକ୍ତିଧୂପଗନ୍ଧମୟ ମାନସ-ମନ୍ଦିରେ
ନିତ୍ୟବସେବିତ ତବ ବରେଣ୍ୟ ପଦ୍ମର
ଅର୍ଚ୍ଚନାକୁ ଭେରୀ, ତୂରୀ, ମଙ୍ଗଳ ମଞ୍ଜୁରୀ
ବାଜଉଠୁ ହୃଦୟନ୍ତେ ଶତ ତାଳେ ଖେଳି ।"



# ମାଟି ।

୧

ଧରଣୀରୂପିଣୀ ମୋର ଧନ୍ୟ ଗୋ ଜନନୀ,
ଅନାଦ୍ୟର ଅଟୁ ତୁହି ସତ୍ତ୍ୱ ପୁରାତନ,
କେତେ ଶୂର, ବୀର ତୋର ଜଠରୁ ଜନମି
ଆଲିଙ୍ଗନ କଲେ ଆହା ତୋ ଅଙ୍ଗ ପାବନ

୨

ତନୁ ତୋର ମହାପୁଣ୍ୟ ଉପାଦାନମୟ,
ସର୍ବ ରସସାର ତୁ ଯେ ସର୍ବପ୍ରସବିନୀ,
ତୋ ଶକ୍ତି ଚିନ୍ତନେ ହୃଦ ହୁଅଇ ବିସ୍ମୟ,
ମାଟିର ବିଭବମୟୀ ସିନା ଏ ମେଦିନୀ ?

୩

ତୋର ଗର୍ଭେ ଜାତ ନର, ବିଶ୍ୱ ଚରାଚର,
ଜାତ ସୌମ୍ୟ ମହାକାଶ ନୀଳ ସମୁନ୍ନତ,
ଅନନ୍ତ ମହିମା ତୋର ଦେବଅଗୋଚର,
କେମନ୍ତେ ବର୍ଣ୍ଣିବି ମୁହିଁ ଦୀନ ମୂଢ଼ମତି ?

୪

କୋଟି ତୀର୍ଥ, ତପୋଧନସେବିତ ତୋ ପଦ,
ବହୁ ନଦ, ନଦୀ, ବନ, ଗିରି-ଅଧ୍ୟୁଷିତ
ପ୍ରଶାନ୍ତ ହୃଦୟ ତୋର ଶୋଭାର ସମ୍ପଦ,
ଦର୍ଶନେ ମାନସ ମୋର ହୁଏ ପ୍ରଫୁଲ୍ଲିତ ।

୫

ବିଶ୍ୱଭକ୍ତି-ସୁଧାପାୟୀ ସାଧକପ୍ରବର
ପ୍ରେମଭରେ ବକ୍ଷେ ତୋର ଲୋଟଇ ଯେକାଳେ,
ପୁଣ୍ୟରେଣୁ ପୂର୍ଣ୍ଣ ତୋର ଚୂର୍ଣ୍ଣ କଳେବର
ଭାସେ କି ବିମଳ ପ୍ରେମ ସୁଖପାରାବାରେ ?

୬

ତୋର ପ୍ରିୟ ସ୍ନେହେ ଚିର ଉଦ୍‌ବେଳିତ ମନ
ଅନନ୍ତ ମାଧୁରୀମୟ ସୁନୀଳ ଗଗନ
ଦୃଶ୍ୟ ଦିବ୍ୟ ରବି, ଶଶୀ, ତାରକାପଙ୍କତି
ଦ୍ୟୁତିକରେ ଅଙ୍ଗ ତୋର କରେ ଆଲିଙ୍ଗନ ।

୭

ଆଲୋକିତ ଧରା, ନୀଳ ବ୍ୟୋମ ଆସ୍ତରଣ,
ଦିବାରାତ୍ରି ଅଭିନୟ ପବିତ୍ର ବିଧାନ,
କୌମୁଦୀଚର୍ଚ୍ଚିତ ସୌମ୍ୟ ଏ ବିଶ୍ୱ-ଭୁବନ,
ସେ ସକଳ ତୋର ନିତ୍ୟ କ୍ରୀଡ଼ା-ଉପାଦାନ ।

୮

ତୋର ପୁଣ୍ୟ ତନୁ ଶେଷ ଗାଢ଼ ଆଲିଙ୍ଗନ
ନରପ୍ରାଣ ପ୍ରାନ୍ତେ ଆଦି ସୁଖର ବିଭୂତି,
ପୁଣ୍ୟ ପଦସେବା ତୋର ମୁକ୍ତିର ଅୟନ,
ଧନ୍ୟ ମାତା ମାଟି ମୋର ଧନ୍ୟ ତୋ ପ୍ରସୂତି



# ମୁଁ କିଏ ?



କେଉଁ ସାଗରର ଅଜଣା ଅତଳୁଁ
ଆସିଛୁ ଅବା ମୁଁ କାହିଁ,
କେଉଁ ଦୂର ଦେଶେ ନିବାସ ମୋହର
ଥିଲେ ତ ଜାଣଇଁ ନାହିଁ ।

ନିତ୍ୟ-ଯାତ୍ରା-ପଥେ ଗୁଳୁ ଗୁଳୁ ପାଦ
ପଡ଼ିଗଲି ଭବ-ବାଟେ,
କିଣ ଭୁବନର ମୋହନ ମାଧୁରୀ
ଦେଖିଲି ମନ-ଉଚ୍ଛାଟେ ।

ଉପରେ ରାଜଇ ସୁନୀଲ ଆକାଶ
ଗ୍ରହ-ଚନ୍ଦ୍ର-ପୁଞ୍ଜେ ଭରା,
ତଳେ ବନ-ଗିରି ଶୋଭାରେ ଭୂଷିତା
ଶୋଭୁଅଛି ବସୁନ୍ଧରା ।

ସୁନ୍ଦର ସିନା ଏ ଭୁବନର ଲୀଳା
ସୁଖମୟ ଏହି ଧରା,
କିନ୍ତୁ ପଦେ ପଦେ ଦୁଃଖର ବିଧାନ
ସାରା-ବିଶ୍ୱେ ଅଛି ଭରା ।

ଅଲୋକ ସେ ସଦା ନଡ଼ିଛ ଧାମସେ
ଚିନ୍ତୁ ନୁହେ କିଛି ଅନ୍ୟ,
କିଏ ସେ କରତା ରଚିଥିଛି ଦୁଃଖେ
ସୁଖମୟ ଏ ଭୁବନ ?

ଯେଦିନ ଚାହିଁବି     ସେ ବିଶ୍ୱବିଧାତା
ନିଖିଳବ୍ରହ୍ମାଣ୍ଡ-ସାଇଁ,
ସେଦିନ ଜାଣିବି     କିଏ ମୁଁ ନିର୍ବୋଧ
ପାଗଳ ମୁଁ କାହାପାଇଁ ।
ସେଦିନ ଦେଖିବି     କେଉଁ ପୁଣ୍ୟଧାମ
ନିତ୍ୟ ଲୀଳାସ୍ଥଳୀ ମୋର,
ସେଦିନ ଲଭିବି     କିଏ ସେ ଦେବତା
(ଭବର) କ୍ଷଣିକ ସମ୍ପଦଗର୍ବର ।

## ଶୁଭଜନ୍ମ

କେମନ୍ତେ ବର୍ଣ୍ଣିବି     କି ଶୁଭ ବାସରେ
ପୂରିଛି ଆହା ଏ ଉତ୍କଳ ମହୀ,
କି ବିମଳ ସୁଖ     ସରିତ ପ୍ରସ୍ରବଣେ
ଯାଉଛି ଅପାର ଉଲ୍ଲାସେ ବହି ?
କେଉଁ ଭାଗ୍ୟେ ଆହା     ଏ ଶୁଭ ପ୍ରଭାତ
ପ୍ରବେଶିଲା ଆସି ବିଶ୍ୱ ଭୁବନେ,
କି ଶୁଭ ମୁହୂର୍ତ୍ତେ     ଏ ଶୁଭ ସମ୍ବାଦ
ପହଞ୍ଚିଲା ଆସି ପ୍ରତି ଭବନେ ?
ମାନ୍ଦ୍ରାଜ ନଗରେ     ରାଜା ରାମଚନ୍ଦ୍ର
ଖଲ୍ଲିକୋଟ-ଅଷ୍ଟଦୁର୍ଗ ଈଶ୍ୱର,
ଶୁଭେ ଲଭିଛନ୍ତି     ବେନି ରାଜ୍ୟ ଭାଗୀ—
ଭାଗ୍ୟବିଧାୟକ ନବ କୁମର ।
ପ୍ରେମର ସମ୍ପଦ     ନବୀନ କୁମାର
କୋଟି ନରନାରୀ ନୟନ-ତାରା,

ଯେନ ପୁରେ ପୁରେ  ଖେଳୁଅଛି ଆଜି
ସୁଖମନ୍ଦାକିନୀ-ପୀୟୂଷଧାରା ।
ବହୁଦିନ ଅନ୍ତେ  ଉତ୍କଳ ଜଗତେ
ଆସିଛି ଆଜି ଏ ପବିତ୍ର ବେଳା !
ନନ୍ଦନ ଆମୋଦ  ନବୀନ ପ୍ରମୋଦ
କରୁଅଛି ପ୍ରତି ହୃଦୟେ ଖେଳା ।
ବୀର ମର୍ଦ୍ଦରାଜ  ପରିବାର-ଖ୍ୟାତି
ଚିରପରିଚିତ ଉତ୍କଳେ ସତେ,
ଯାର କୀର୍ତ୍ତିମାଳା  ରହିଛି ଅଙ୍କିତ
ଜଳେ, ସ୍ଥଳେ, ନଭେ କି ବା ପର୍ବତେ ।
ସେହି ରାଜବଂଶ—  ଅବତଂସମଣି
ରାମଚନ୍ଦ୍ର ! ଜୟ ଶାନ୍ତିକେତନ,
ସ୍ୱଦେଶ କଲ୍ୟାଣ—  ସାଧନେ ନିରତ
ଢାଳିଅଛ ଧନ, ମାନ, ଜୀବନ ।
ବରଷୁ ହେ ତୁମ୍ଭ  ଶିରେ ଅବିରତ
ବିଭୁ-ପୁଣ୍ୟ-ବାଞ୍ଛା ଚିର କୁଶଳ,
ସରଳ ସୁନ୍ଦର  କୁମାର ରତନ
ଯେନ କୁଳମୁଖ ହେଉ ଉଜ୍ଜ୍ୱଳ ।

## ବ୍ୟୋମପୋତ

ପ୍ରାଚୀ ଆଶା ଅଙ୍କେ          ଖେଳନ୍ତିଣି ଶତ
ସମୁଜ୍ଜ୍ୱଳ ଶୁଭ୍ର ରଜତରେଖା,
ଗମିଲେଣି ନୀଡ଼ୁଁ          ବିହଙ୍ଗମେ ଲଙ୍ଘି
ଶତ ନଦ, ନଦୀ, ଭୂଧରଶିଖା ।

ହୃଦୟ-ତନ୍ତ୍ରୀରେ          ଖେଳନ୍ତିଣି ଶତ
କର୍ମୋତ୍ସବମୟ ମୋହନ-ତାନ,
ଦିଗଦିଗନ୍ତର          କରନ୍ତିଣି ମୁଖର
ଲଳିତ ମୋହନ ବିହଙ୍ଗଗାନ ।

ନବ ଅଙ୍ଗରାଗେ          ଆବୃତ ଅବନୀ
ନବ ଶୋଭାରାଶି ଉଚ୍ଛସେ ଅଙ୍ଗେ,
ଦିବା ଆଗମନେ          ଆନନ୍ଦିତ ମନେ
ଭାସଇ ଚୌଦିଗ ଶୋଭା-ତରଙ୍ଗେ ।

ଖେଳଇ ଅପାର          ସୌନ୍ଦର୍ଯ୍ୟ-ସୁଷମା
ଚିଲିକାର ଶୁଭ୍ର ନୀଳ କଲ୍ଲୋଳେ,
ବିଳସନ୍ତି ଯହିଁ          ମରାଳ, ମରାଳୀ
ବିମୋହନ ମଧୁ ପ୍ରଣୟହିଲ୍ଲୋଳେ ।

ସମାକୀର୍ଣ୍ଣ ଆଜ          ଯାର ରମ୍ୟ ତୀରେ
ବାଳ, ଶିଶୁ, ଯୁବା, ସ୍ଥବିରକୁଳ,
ଧନ୍ୟ ସେହୁ ସ୍ଥଳୀ          ବିରାଜଇ ଯହିଁ
ପ୍ରକୃତି ଦେବୀଙ୍କ ଶୋଭା ବିପୁଳ ।

ଖେଳଇ ଏ ଭୂମି    ଅପାର ଆନନ୍ଦ—
ସାଗରେ ସର୍ବଦା ଦିବା ରଜନୀ,
ବକ୍ଷେ ଯେନ ନିଶ    ଲୋଭନୀୟ ଶୃଙ୍ଗ
ରାଜହର୍ମ୍ୟ ଯାର ସୁଷମାଖଣି;

ଦର୍ଶକ-ନୟନ—    ପଥେ ଅବରୁଦ୍ଧ
ପ୍ରୀତି-ସୁଧାଧାର କରେ ବର୍ଷଣ,
ମଞ୍ଜୁ କୁଞ୍ଜେ କେତେ—    କୁସୁମ ପରାଗେ
ସୁଦୂରେ ଯା କାନ୍ତି ହୁଏ ଶୋଭନ ।

ଶତ ବିଦ୍ୟୁସ୍ମିତା    ସ୍ଫୁରିତ ଅଧରେ
ରଜନୀ ତାମସେ ଯେ ମହାନନ୍ଦେ
ସୁନୀଳ ଚନ୍ଦ୍ରିକା    ହୃଦୟ-ଦର୍ପଣେ
ନିରେଖଇ ନିଜ ମୁଖ ସମ୍ପଦେ,

ଧନ୍ୟ ସେ ଶୋଭାର    ବିରାଟ ପସରା
ଯା ରୂପ ବୈଚିତ୍ର୍ୟ ମାଧୁରୀ ଧନ
ହରୁଛି ଅସଂଖ୍ୟ    ନରନାରୀଙ୍କର
ଜନ୍ମଜନ୍ମାନ୍ତର ବିଷାଦଘନ । *

କେତେ ନରନାରୀ    ହୃଦ ଆହା ଏଥି
କେତେ ମହୋତ୍ସବେ ଉଠିଛି ନାଚ,
ଅଛି ପୁଣି କୋଟି    ହୃଦୟେ ଏ ଭୂମି
ଖେଳାଏ ଆଶାର ଅସଂଖ୍ୟ ବୀଚ ।

---

* ଧି—ଚାନ୍ଦ

ଅତୀତର ସେହି ଅନନ୍ତ ଗରିମା
କାଳସ୍ରୋତେ ଆହା ଯାଉଛି ଭାସି,
ଇତିହାସ ମାତ୍ର ରଖିଛି ଜାଗ୍ରତ
ଭାରତୀୟ ଭୂତ ସମ୍ପଦରାଶି ।
ପୁରାଣବର୍ଣ୍ଣିତ ପୁଷ୍ପକ ବିମାନ
ନ ଦେଖିବ ଆଜ ନର-ନୟନ,
ବିମାନ ନୂତନେ ତା ନବ୍ୟ ଜଗତର
ବୈଜ୍ଞାନିକ-ହୃଦ-ଜ୍ଞାନଦର୍ପଣ ।
ବ୍ୟାକୁଳ ହୃଦୟେ ଅଛନ୍ତି ସରବେ
ନିରେଖି ପ୍ରଶାନ୍ତ ଗଗନବକ୍ଷେ,
ସୁଦୂର ଆଗତ ଗୁରୁ ବ୍ୟୋମପୋତ
କମନୀୟ ରୂପ ଦର୍ଶନ ଲକ୍ଷେ ।
ଶତ-ଶିର-ଭୃଙ୍ଗ— ଗଗନ-ବିହାରୀ
ବିହଙ୍ଗମାଳାର ଅଦୃଷ୍ଟ-କାନ୍ତି
ପଲକେ ଜନ୍ମାଏ ଦର୍ଶକ ନୟନେ
ଦୂରାଗତ ବ୍ୟୋମପୋତର ଭ୍ରାନ୍ତି ।
ଘଣ୍ଟ ଶୈଳ ଶିର— କନ୍ଦର ତାଡ଼ିତ
ପ୍ରଭଞ୍ଜନ ଦୋଳେ ହୋଇ ଦୋଳିତ,
ପଙ୍କ୍ତି ଧୂମ୍ରମାଳା କାହାର ହୃଦୟେ
ସେହି ଆଶା ଅବା କରେ ଉଦିତ ।
ଗୁହ୍ନଁ ଗୁହ୍ନଁ କ୍ରମେ ଘର୍ଘର ଶବଦେ
ସେହି ଗମ୍ଭୀରତା କରି ଭଗନ,
ଚନ୍ଦ୍ରାକାରେ ଘୂରି ବ୍ୟୋମପୋତ ଆସି
ନେତ୍ରପଥେ ଆହା ହେଲା ଶୋଭନ ।

ଘୂରୁ-ଚକ୍ରଗଣ ବିରଚି ସଧୀରେ
ଗଗନମଣ୍ଡଳେ ଦୋଳାଇ ତନୁ,
ହରିଲା ପଲକେ ସକଳ ବିଷାଦ
କୋଟି ନରନାରୀଙ୍କର ନୟନୁ ।
ବିସ୍ତାରିତ-ବକ୍ଷେ ସେକାଳେ ଚିଲିକା
ଅକଳିତ ଗୀତ କରି ତୋଳନ,
ପ୍ରଫୁଲ୍ଲ ମାନସେ ପ୍ରେରୁଥିଲା କିବା
ସମ୍ମାନସୂଚକ ଅଭିନନ୍ଦନ ।
ଦର୍ଶକମଣ୍ଡଳୀ କରତାଳି ଶବ୍ଦେ
ଦିଗଦିଗନ୍ତର ହେଲା ଧ୍ୱନିତ,
ଘଣ୍ଟଶୈଳ ତହୁଁ ପ୍ରତିବାଣୀ ଦାନେ
ଆଗନ୍ତୁକ ଚିତ୍ତ କଲା ମୋଦିତ ।
ଘୂରିଁ ଘୂରିଁ କ୍ରମେ ଘୂରୁ ପୋତବ୍ରାତ
ଚିଲିକା ବକ୍ଷେ ହେଲେ ଅବତୀର୍ଣ୍ଣ,
ଯାର କ୍ଷିପ୍ରଗତି ପ୍ରବଳ ବେଗରେ
ନୀଳ ଜଳରାଶି କଲା ବିଦୀର୍ଣ୍ଣ ।
କିଛିକ୍ଷଣ ପରେ ସ୍ଥିର ହେଲେ ଯନ୍ତ୍ର
ନବାଗତ ବ୍ୟୋମତରଣୀଗଣ
ଶତ ଶତ ନାବ ଦର୍ଶନଲାଳସେ
ଦର୍ଶକସମୂହ କଲେ ଗମନ ।
ଭୁଲିଲା ପଲକେ ହୃଦୟର ସେହି
ଅନନ୍ତ ଉଦ୍‌ବେଗ କରି ଦର୍ଶନ,
ମନୁଷ୍ୟାକୃତି ଘୂରୁ ଲୌହସୁନିର୍ମିତ
ରାଜକୀୟ ବ୍ୟୋମବିମାନଗଣ ।

ବୋହିଉଛି ଭର    ଲୌହଦଣ୍ଡ ବେଳ
ଘୋର ଗର୍ଭଶାଳୀ ଗଗନ-ପୋତ,
ହୋଇବାରୁ ସିନା    ମାନବର ବୁଦ୍ଧି,
ବିଜ୍ଞାନ ଆକାଶେ ସାଗର ସ୍ରୋତ ।
ଜ୍ଞାନବଳେ ଭାଇ    ଅସାଧ୍ୟ ସାଧିତ
ଯାର ଯୋଗେ ଲଭ ନବ ଶକତ,
ଟେକିଅଛି ଆଜ    ବ୍ରିଟିଶ କେଶରୀ
ବରିଷ୍ଠ ଭୂଖଣ୍ଡେ ବିଜୟ ଛତ୍ର ।
ଜ୍ଞାନର ଆଲୟ    ଅଟେ ଏ ଉତ୍କଳ
ଯାର ପୂତବକ୍ଷେ ଲଭି ଜନମ,
ଉପଇନ୍ଦ୍ର, ବଳ—    ଦେବ, ରାଧାନାଥ
ଆଦି କେତେ ଜ୍ଞାନପ୍ରେମିକଗଣ,
ହୃଦୟେ ହୃଦୟେ    ନବଜ୍ଞାନ ଦାନ
ଜନ୍ମଭୂମିମୁଖ କଲେ ଉଜ୍ଜ୍ୱଳ,
ଖଲ୍ଲିକୋଟ ଭୂତ—    ନୃପ ପୂତନାମା
ହରହର ଯାର ଚିର ସମ୍ବଳ ।
ଅଜ୍ଞାନ ଅନ୍ଧାରେ    ପୂରିଅଛି ଆଜ
ଶିକ୍ଷା-କୃଷି-ସାର ଉତ୍କଳ ଦେଶ,
ଖଣ୍ଡବିଖଣ୍ଡିତ    ହୋଇଛି ମା'ଆର
ଅତୀତର ଦୃପ୍ତ ମୋହନବେଶ ।
ନ ଜାଣେ କିପାଇଁ    ଧରିଛି ଓଡ଼ିଆ
ଘୋର ଦୁଃଖପୂର୍ଣ୍ଣ ଉଦାସ-ପ୍ରାଣ,
ଜ୍ଞାନ ଆରାଧନା    କରିବ କେବଳ
ଦେଶକୁ ଏ ମହାସଙ୍କଟୁ ତ୍ରାଣ ।

"ଜାଗ ଜାଗ ଆଜ          ଜାଗ ହେ ଓଡ଼ିଆ
ସୁପ୍ତ ଅଙ୍ଗେ ଲଭ ନବୀନ ପ୍ରାଣ,
ଦିଗ ଡୁବି ଦେବ          ଘୋଷ ଓଡ଼ିଆର
ଦ୍ୱାଉଗଡ଼ା କୋଷ୍ଠ ବ୍ୟୋମବିମାନ ।"



# ଚିଲିକା

## ପ୍ରଥମ ସର୍ଗ

( ରାଗ—ନଟବାଣୀ । )

"ଉତ୍କଳର ବକ୍ଷେ ଶୋଭିସୌଦାମିନୀ
ସୌନ୍ଦର୍ଯ୍ୟପସରା ଚିଲିକା ହ୍ରାଦିନୀ,
ନୀଳକାନ୍ତ ତନୁ ତୋର ଅନୁପମ,
ହର ଆଗନ୍ତୁକ ମାନସରଞ୍ଜନ ।
ମଞ୍ଜୁ ଶୋଭା ତୋର ଅମର୍ତ୍ତ୍ୟ ବିଭବ,
ସେ ଶିରୀ ଅବନୀମଣ୍ଡଳେ ସମ୍ଭବ—
ହେବା ଅଟେ ସିନା ଭାଗ୍ୟ ଅନୁକୂଳ
ତଟ ଦେଶ ତୋର ପୁନ୍ନାଗ ବକୁଳ
ଆଦି ନାନାବିଧ କୁସୁମେ ମୋଦିତ,
ବିହଙ୍ଗମ କଣ୍ଠ କୋମଳ ସଙ୍ଗୀତ
ମୃତ ପ୍ରାଣେ ଢାଳେ ସଞ୍ଜୀବନୀ ପୂର,
ଆଦରର ଧନ ତୁହି ଉତ୍କଳର ।

ଯବେ ଚନ୍ଦ୍ରଚୂଡ଼* ନିଜ ପ୍ରିୟା ସଙ୍ଗେ
କରୁଥିଲେ କ୍ରୀଡ଼ା କୁତୂହଳ ରଙ୍ଗେ,
ଗୁରୁଚନ୍ଦନମୟ ଏ ସୌମ୍ୟ ବିଜନେ
ବଙ୍ଗସିନ୍ଧୁତୀର ନିବିଡ଼ କାନନେ ।
ସେକାଳେ ଥିଲୁ ତୁ ଦିବ୍ୟ ଅପସରୀ
ଦେବଲୋକେ ଦେବପଦ ଅନୁସରି,
ଯାପୁଥିଲୁ କାଳ ଅକ୍ଷୟ ଆନନ୍ଦେ,
ବଦନଶ୍ରୀ ମଣ୍ଡି ସୁଷମା ସମ୍ପଦେ ।
ଦିନେ ଦେବରାଜ ଦେବନୀରାଜନ
ସମ୍ପାଦନ ଆଶେ ମଣି ପ୍ରୟୋଜନ,
କହିଲେ ମଧୁର ଆଦେଶ ତୋ ପ୍ରତି,
"ଯାଅ ଗୋ ଉତ୍କଳ—ପ୍ରଦେଶେ ସମ୍ପ୍ରତି ।"
ଦେବଦେବୀ ସଞ୍ଚାରଣସ୍ଥଳୀ ମାତ୍ର
ଅଟେ ଯାର ଚିର-ଉପବୀତ-ଗାତ୍ର,
ପୁଣ୍ୟତୋୟା ତହିଁ ବହେ ମହାନଦୀ
ଉତ୍କଳବାସୀଙ୍କ ପ୍ରିୟ ବକ୍ଷପଦୀ ।
ଦେବଦେବୀ ସ୍ନାନେ ପୂତ ଯାର ନୀର,
ଇଷ୍ଟଦେଶ ଯାର ସାଧନା ମନ୍ଦିର,
ସେହି ନଦୀଜଳ ସ୍ୱର୍ଣ୍ଣକୁମ୍ଭେ ଭରି,
ଅମର ଭୁବନେ ଆସ ଗୋ ଅପ୍ସରୀ ।
ସେ ସଲିଳପୂତ ପୂଜା ପ୍ରୟୋଜନ
ଅଟଇ ଆମ୍ଭର ଆଣ ଗୋ ବହନ ।"

---

* ଚନ୍ଦ୍ରଚୂଡ଼—ମହାଦେବ ।

ଦେବମଣି ଆଜ୍ଞା ଶିରୋଧାର୍ଯ୍ୟ କରି,
ଏ ଉତ୍କଳେ ତୁହି ଆସିଲୁ ସୁନ୍ଦରୀ ।
ଗୁରୁଗୁମ୍ଫେ ଭରି ମହାନଦୀ ବାରି,
ବନପଥେ ମୃଦୁ ଚରଣ ସଞ୍ଚାରି ।
ଫେରୁଥିଲୁ ତୁହି ଆପଣା ଭବନେ,
ଏ କାଳେ ଶିବଙ୍କୁ ଭେଟିଲୁ ଅଯତନେ ।
ଦୂରେ କୁମ୍ଭ ନେଇ ପଦେ ପ୍ରଣମିଲୁ,
ଭକ୍ତିଭରେ ଦେବ ମାନସ ମୋହିଲୁ ।
ପ୍ରେମନେ ପ୍ରଭୁ ଭାଷିଲେ ବଚନ,
"ଇଚ୍ଛାମତ ବର ମାଗ ଗୋ ବନ୍ଦନ ।
ତୋର ଭକ୍ତିକ୍ରୀତ ଅଟେ ମୁଁ ଶଙ୍କର,
ଶଙ୍କର ନୁହେ ତୋ ଚରଣକିଙ୍କର ।"
ସେକାଳେ ତୋ ବିମ୍ବ ଅଧରୁ ସୁଭାଷ,
କଳକଳ ସ୍ୱନେ ପାଇଲା ପ୍ରକାଶ ।
"ଜୟ ଜୟ ଦେବ ଶରଣବତ୍ସଳ !
ଭବଦୁଃଖହର ଜୟ ଦିଗମ୍ବର !
ଦାସୀଜନେ ଯଦି ପ୍ରକାଶିଛ କୃପା
ଏ ପୁଣ୍ୟ ଉତ୍କଳଶୋଭା ଅପରୂପା
ବକ୍ଷେ ଦିଅ ସ୍ଥାନ ଯେପରି ସୁଷମା—
ସମ୍ପଦେ ହେବି ମୁଁ ଭବେ ନିରୁପମା ।"
ତୋର ଭକ୍ତି ଶୁଣି ପ୍ରଭୁ ବୃଷଧ୍ୱଜ,
ଢାଳିଲେ ତୋ ଶିରେ ଆଶୀର୍ବାଦବ୍ରଜ ।
"ପୂର୍ଣ୍ଣ ହେଉ ବାଞ୍ଛା" ପ୍ରଭୁ ଏହି ଗିର
ଭାଷିବାରୁ ପରା ଧଣ୍ଟିଲ ଶିର

ସୋପାନୁ ତୁ ଶୃଙ୍ଗୁ କଲକଲ ସ୍ୱନେ
ଓହ୍ଲାଇ ଆସିଲୁ ସହାସ-ବଦନେ ?
"ସେ ଦିନୁ ପରା ତୁ ବିରାଟ ହ୍ରାଦିନୀ
ପରସ୍ତେ ବ୍ୟାପିଲୁ ଉତ୍କଳ ମେଦିନୀ ?
କଲ ଗୀତଛନ୍ଦେ ଦିଗ ପୂରାଇଲୁ,
ଭବବାସୀଙ୍କର ମାନସ ମୋହିଲୁ ?
ମାତ୍ର ଦେବରାଜ ଆଦେଶ ଅପୂର୍ଣ୍ଣ
ହେବାରୁ ପରା ସେ ଶାପ ଦେଲେ ଭୃଣ୍ଡି ?
ଲବଣାକ୍ତ ହେଲା ତୋର ପୁଣ୍ୟ ନୀର
ଶୃଙ୍ଗୁ ଗନ୍ଧଚ୍ୟୁତ ହେଲା କି ପନୀର ?
ଦିବାରାତ୍ରି ତୋର ଅଦ୍ୟ ସହଚରୀ
ସେବାନ୍ତୁ ତୋ ନୀଳ ବକ୍ଷେ ଅବତରି,
କରୁଛନ୍ତି କିବା ବିଶ୍ୱେ ପ୍ରକଟନ,
ଦିବାରଜନୀର ଲୀଳା ଚିରନ୍ତନ ।
ଯୋଗୀଜନଗଣ ମନୋମୁଗ୍ଧକର
ଅଟେ ତୋ ନର୍ତ୍ତନ ସ୍ନିଗ୍ଧ ଶୀକର—
ବାୟୁସଞ୍ଚାଳିତ ଶୃଙ୍ଗୁ ତୀରପୁଞ୍ଜ
ଯହିଁ ଶ୍ୟାମଳତ ନିବିଡ଼ ନିକୁଞ୍ଜ —
ତରୁଶାଖେ ବସି ବିହଙ୍ଗମଗଣ
ସୃଜନ୍ତି ସଙ୍ଗୀତ କର୍ଣ୍ଣରସାୟନ ।
ଦିବା, ରାତ୍ରି, ସନ୍ଧ୍ୟା ଅବିର ନିଶାନ୍ତ—
କାଳୀନ ତୋ ଶୋଭା ବିମଳ ପ୍ରଶାନ୍ତ
ଦର୍ଶନେ ହୃଦୟ ହୁଏ ପ୍ରଫୁଲ୍ଲିତ,
ଦ୍ୱୀପ, ଶୈଳପୁଞ୍ଜେ ତୋ ବକ୍ଷ ମଣ୍ଡିତ ।"

ଅଛୁ 'ବରକୁଦ' ଦ୍ୱୀପ ମନୋରମ
ନିର୍ମାଣିଲେ ଯହିଁ 'ଚିଲିକା ଆଶ୍ରମ'
ନାମେ ତୁଙ୍ଗ ସୌଧ ବିଜ୍ଞାନୀପ୍ରବର
କର୍ଣ୍ଣଧାରରୂପୀ ଯାନା ଉତ୍କଳର,
ହରିହର ମର୍ଦ୍ଦନୃପତିବଂଶିକ
ଅମଳ ଉତ୍କଳ ପ୍ରକୃତିପ୍ରେମିକ ।
ଉତ୍କଳର ବକ୍ଷେ ଏହା ତୀର୍ଥସ୍ଥଳ,
ଅବିରତ ଯହିଁ ଆଗନ୍ତୁକ ଦଳ
ଅପଲକ ନେତ୍ରେ ନିରେଖି ତୋ ହ୍ରଦ
ସୌନ୍ଦର୍ଯ୍ୟମଦିରା ପାନେ ହୋନ୍ତି ମୁଦ ।
ଦୂରଦେଶବାସୀ ସାଧୁ, ମହାଜନ,
ମୁନି, ଯୋଗୀଙ୍କର ଚିର ସମାଗମ—
ପୀଠ ଅଟେ ଏ ତ ମହାତୀର୍ଥସ୍ଥଳ,
ଦକ୍ଷିଣ ଉତ୍କଳେ କିବା ନୀଳାଚଳ ?
ନୀଳକାନ୍ତମଣି ନୀଳରାଗେ ଜିଣି,
ତୋ ବକ୍ଷ ଉଦ୍ଭିତ ଶତ ଗିରିଶ୍ରେଣୀ ।
ଊର୍ଦ୍ଧ୍ୱେ ବିରାଜିତ ସୁନୀଳଗଗନ,
ନିମ୍ନେ ଶୋଭେ ତୋର ନୀଳ ଅପଘନ ।
ବେନି ନୀଳିମାକୁ ଜିଣି ଅଙ୍ଗରାଗେ,
ଶୋଭନ୍ତି ଭୂଧରେ ନାନା ହରିତ୍‌ବଲ୍ଲୀଭାଗେ ।
ମରାଳୀ ଦୋଳନ୍ତି ତୋହର ତରଙ୍ଗେ,
ତେଣେ ମେଘାସନେ ଉଡ଼ନ୍ତି ବିହଙ୍ଗେ ।
ଗିରିବକ୍ଷେ ନବ ସୁଷମା ସଞ୍ଚାରି
ସୃଜି ପୁଣି ପକ୍ଷୀନିବହ ଉଡ଼ନ୍ତି ।

ଉର୍ଦ୍ଧ୍ୱ, ଅଧଃ, ନିମ୍ନ ସଉଏଁ ଗଗନ
ପଶ୍ଚାତେ ତ ଦେଖାଯାନ୍ତି ଶୋଭାବନ ।
"ଏଠାବେ ସହଜେ ଦାମ୍ଭିକ-ହୃଦୟ
ଦମ୍ଭପଣ ମୋଟେ ଭଛବା ବଳୟ
ନୁହଇ ଆଶ୍ଚର୍ଯ୍ୟ, ନୁହେ ଚମତ୍କାର,
ଶୋଭା ସଙ୍ଗେ ବିଭୀଷିକାର ଆଗାର
ଖୋଲିଛି ଚିଲିକା ରୁଦ୍ରବକ୍ଷେ ଘୋର,
ଯାତ୍ରୀଦଳଙ୍କର ହୋଇ ପ୍ରାଣବୈର,
କାଳ କ୍ରୂର ଏଥି ଭ୍ରମଇ ସନ୍ତତ,
ସ୍ରୋତସ୍ୱିନୀ ହୃଦେ ଯେସନ ଆବର୍ତ୍ତ ।
କେତେ କେତେ ଯାତ୍ରୀ ହ୍ରଦବକ୍ଷ ପାରୁ
ହେବା କାଳେ ନଭୁ ବରଷାଇ ବାରୁ,
ରୌଦ୍ରବେଗେ ଆଚ୍ଛାଦ ନିବିଡ଼ ତିମିର,
ବୁହାଇ ପ୍ରବଳ ପ୍ରଳୟ ସମୀର,
ବାରିଗର୍ବେ ଦର୍ପେ କ୍ଷେପିଣ ଧରଣୀ,
ନ ସାରନ୍ତି ପ୍ରାଣ କାଳ ଖଣ୍ଡମଣି ?
ସୀମା ଅତିକ୍ରମି ବରଷିଲେ ନୀର,
ଶସ୍ୟଶ୍ୟାମଳତ ଘୋର ସୌମ୍ୟ ତୀର
ଠାବେ ଠାବେ ହୁଏ ହ୍ରଦଗର୍ଭଶାୟୀ
କୃଷୀବଳ ନେତ୍ରୁ ଲୋତକ ବୁହାଇ
ପାଳୋଇ ରାଜ୍ୟର ଗୃହକ୍ଷେତ୍ରପନ୍ତି
ଲଭନ୍ତି ଉର୍ବରଉତ୍ପାଦକା ଶକ୍ତି ।
ଘୋର ଲବଣାକ୍ତ ସଲିଳ ପରଶେ,
ବନ୍ଧୁ ଜନପଦବାସୀଏ ହରଷେ ।

ପକ୍ୱଅ ପୂରିତ କେଦାରେ ଗୋଧୂମ
ମୁଗ, ଧାନ୍ୟ ଆଦ ବହୁବଧ ତୃଣ
ବଢ଼ଇ ଯତନେ ପୂରାନ୍ତ ଅଶେଷ,
କୋଟି ଜନଙ୍କର ଅନ୍ନ ଭୂ ଅଶେଷ ।
ପଞ୍ଚବିଂଶ କ୍ରୋଶ ଦୀର୍ଘ ଆୟତନ
ପଞ୍ଚକ୍ରୋଶ ପ୍ରସ୍ଥ ବ୍ୟାପି ଏ ଭୁବନ
ପରଶିକୁ ଭୂମି ଅଖିଳ ଆନନ୍ଦେ,
ବଦନଶ୍ରୀ ମଣ୍ଡି ସୁଷମାସମ୍ପଦେ ।
ତୋ ରୂପରାଶିର ଡିଣ୍ଡିମ ବଜାଇ,
ପକ୍ଷୀଏ ଉଡ଼ନ୍ତି ତୋର ବକ୍ଷେ ଗାଇ ।
ପ୍ରାଚୀ ନଭେ ଯେବେ ଉଠଇ ତପନ,
ହେମ-ଅଂଶୁଜାଳେ ଜାଳ ଏ ଭୁବନ,
ସଯତ୍ନେ ବନ୍ଧଙ୍ଗେ ଯୂଥିକା ସଜାଇ,
ଶତ ରାଗେ ଗୀତ-ବର୍ଗଲ ବଜାଇ,
ଏକ ଦଣ୍ଡ ଆର ଦଣ୍ଡେ ହୋଇ ପାର,
ଦିବା ଆଗମର ବାରତା ପ୍ରଚାର
କରନ୍ତି ସେ ଶୋଭା ହୃଦଉନ୍ମାଦକ,
ତୋ ବାଉ ଉତ୍କଳବକ୍ଷେ ପୁଣ୍ୟୋଦକ ।
ନ ଥିଲା ଯେକାଳେ ଦେଶେ ରେଲ ଗାଡ଼ି,
ଧନ, ରତ୍ନରାଜି ପଣତେ ସଜାଡ଼ି
ରଖିଥିଲେ ମାତୃରୂପିଣୀ ଉତ୍କଳ,
ସେକାଳେ ତୋ ତୀରେ ତୀରେ ଯାତ୍ରୀଦଳ
ନୌକା ଆରୋହଣ କରି ହୃଷ୍ଟମନେ,
ଗମୁଥିଲେ ଦେବଦର୍ଶନ କାରଣେ ।

ଉଚ୍ଚପଦକାମୀ କୋଟି ମହାଜନ
ଉପନୀତ ପଦ କରି ପ୍ରକ୍ଷାଳନ,
ଅସିକ୍ତ ଚିଲିକା କଳକଲ୍ଲୋଳିନୀ !
ତୁହି ଉତ୍କଳର କଳୁଷହାରିଣୀ ।
'କାଳୀଯାତ୍ରୀ' ଗଣ୍ଡ ଗର୍ଭ ସୁଗଭୀର,
ତରଙ୍ଗମାଳିନୀ ଶୀକରସମୀର ।
ଯହିଁ ବଣବାସୀଙ୍କର ମାତୃ ନାଜେ,
'କାଳଯାତ୍ରୀ' ରୂପେ କରଛନ୍ତି ଭଜେ ।
ଜୀବ-ଜଗତର ମଙ୍ଗଳକାରିଣୀ,
ମାୟାମୟ ଭବସଙ୍କଟତାରିଣୀ,
ସେହି ଦେବୀଙ୍କର ପଦେ ମୋ ପ୍ରଣତି,
ଘୁଞ୍ଚାନ୍ତୁ ସେ ଦେଶବାସୀଙ୍କ ଦୁର୍ଗତି ।
ହାସପୂର୍ଣ୍ଣ ମୁଖ ତୋର ଉର୍ଜସ୍ୱଳ,
ନାବିକଗଣଙ୍କ ଅଟୁ ତୁ ସମ୍ବଳ ।
ହୃଦେ କାଳଯାତ୍ରୀ ମହିମା ସୁମର,
ପ୍ରିୟ ଯାତ୍ରୀଦଳ କ୍ଷୁଦ୍ର ନାବେ ଭର,
ଦ୍ରୁତବେଗ ସେହି ହେଉଛନ୍ତି ପାର,
ଚିଲିକା ତୋ ଗୁଣ ଅଟଇ ଅପାର ।
ସିନ୍ଧୁମୁଖେ ଗମେ ତୋ ଖାତନକର,
ଉତ୍କଳର ବକ୍ଷେ ତୁହି ରତ୍ନାକର ।



# ଦ୍ୱିତୀୟ ଭାଗ

## ଦ୍ୱିତୀୟ ସର୍ଗ

ଦେଖୁ ଦେଖୁ ଦିବା ଗଲା ଅପସରି,
ଖେଳାଇ ରୌଦଗେ ସୌନ୍ଦର୍ଯ୍ୟ-ଲହରୀ ।
ଗ୍ରାମପଦେ ମୋର ବହଇ ଚଲକା,
ହ୍ରାଦନୀ ସମାନେ ସୌନ୍ଦର୍ଯ୍ୟର ଟୀକା ।
ତୀରେ ତାର କତ ବସି ମୁଁ ବିଜନେ,
ଭାଳେ କେତେ କଥା ଚନ୍ଦ୍ରାଗନ୍ଧ-ମନେ ।
ଆଜ ପୁଣି ପ୍ରତି ସନ୍ଧ୍ୟାର ନିୟମ
ବସି ମୁଁ ସେ ତୀରେ କରୁଛି ପାଳନ ।
ଦେଖୁଅଛି ସାନ୍ଧ୍ୟ ଆକାଶର ଛବି,
ଅସ୍ତାଚଳ ଚୂଳେ ଗୁରୁ-ରକ୍ତ-ରବି ।
ବର୍ଣ୍ଣିନାର ପାରେ ସେ ଛବି ସୁଷମା,
ଅବନୀମଣ୍ଡଳେ କାହିଁ ତା ଉପମା ?
ତରଙ୍ଗ ଆକାରେ ରକ୍ତ ମେଘରାଜି
ଅସ୍ତ-ନଭ ଗୁରୁ ମସ୍ତକେ ବିରାଜି,
ଦୃଷ୍ଟିପଥେ ପ୍ରୀତିପୀୟୂଷ ବର୍ଷଣ ,
କରୁଛନ୍ତି ଛାଳ ସୁରମ୍ୟ କିରଣ ।
ଊର୍ଦ୍ଧ୍ୱେ ବିହଙ୍ଗମେ ଯାଉଛନ୍ତି ଉଡ଼ି,
ଗୋଷ୍ଠରୁ ଗୋଧନ ଆସନ୍ତି ବାହୁଡ଼ି ।
ଅଗ୍ରେ ଅନ୍ଧାରଢ କରି ନୀରବେଣୀ,
ରାଜେ ତୁଙ୍ଗ ଘଣ୍ଟଶୈଳ ଶୀଳାଶ୍ରେଣୀ ।

ତୀର-ତରୁକୁଞ୍ଜେ ବସି ପିକାଳୀ,
ସଙ୍ଗୀତଲହରୀ ଦେଉଛନ୍ତି ଢାଳ ।
ଲଙ୍ଘି ଶତ କୁସୁମିତ ଉପବନ
ଧୀରେ ବହୁଅଛି ଗନ୍ଧ-ସମୀରଣ ।
ଅଦୂରେ ମରାଳ-ମରାଳୀ-ଯୂଥିକା
ଗାଉଛନ୍ତି ମନ-ମୋହନ-ଗୀତିକା ।
ଗୀତିକା ନୁହେ ତା ପୀୟୂଷ-ମନ୍ତ୍ର,
ଶ୍ରବଣେ ଉଲ୍ଲସି ଉଠଇ ଅନ୍ତର ।
ଦେଖି ସେ ମାଧୁରୀ, ଶୁଣି ସେ ସଙ୍ଗୀତ,
ସୁଖନନ୍ଦେ ହୃଦ ହୁଏ ଆନ୍ଦୋଳିତ ।
ଦେଖୁ ଦେଖୁ ସେହି ଶୋଭା ଜଡ଼ବତ,
କ୍ରମେ ହେଲି ମୁହିଁ ଗାଢ଼-ନିଦ୍ରାଗତ ।
ଚାରୁଶୋଭା-ମୟ-ଦୂର୍ବାଦଳ-ଶ୍ୟାମ—
ତଟଦେଶେ ହେଲା କ୍ଷଣିକ-ବିଶ୍ରାମ ।
ଚାରୁଚନ୍ଦ୍ରମୟୀ ସେ ଯୋଗ-ବଦନେ
ଶ୍ରୁତିବିମୋହନ ସୁମଧୁର ସ୍ୱନେ
ଶୁଣିଲି ନିଃସ୍ୱନ କର୍ଣ୍ଣରସାୟନ,
"ଶୁଣ ରେ ନିର୍ବୋଧ-ଉତ୍କଳ-ନନ୍ଦନ !
ଏ ହ୍ରଦ ପୁଳିନ ମଞ୍ଜୁ-ଶୋଭାମୟ
ନୁହେ ତୋର ଯୋଗ୍ୟ ଶୟନ-ନିଳୟ ।
ପବିତ୍ର ପୂଜାର ପବିତ୍ର ମନ୍ଦିର
ଦେବବିଳସିତ ଏ ସୁରମ୍ୟ ତୀର
ଅଟଇ ତହିଁ ତୁ ଯୋଗ୍ୟ ଆରାଧନ
କର ଲଭ ଶାନ୍ତିପଥ ସୁରଢନ ।

ଭାବି-ଉତ୍କଳର ପଥପ୍ରଦର୍ଶକ,
ଉତ୍କଳୀୟ ହୃଦ ଅହ୍ଲାଦଦାୟକ,
ଅବତୀର୍ଣ୍ଣ ପୂର୍ଣ୍ଣଚନ୍ଦ୍ର ନାମଧର,
ପୂର୍ଣ୍ଣ ହେଲା ଆଜ ପ୍ରଥମ ବତ୍ସର ।
ଭାବମୟ ଶିଶୁ-ହୃଦ-ସ୍ପନ୍ଦହତ,
ଗୁଣଜ୍ଞାନଅକୂପାର ତେଜୋବନ୍ତ ।
ପିତା, ମାତା, ପ୍ରିୟ-ଜନ-ଗଣେ ଯତ୍ନେ
ଏ ଜୀବନ ତାରେ କରୁଛନ୍ତି ଯତ୍ନେ ।
ନିଖିଳ-ଉତ୍କଳ-ମହା-ସମ୍ମିଳନୀ
ଯେ ରାଜବଂଶର ପବିତ୍ର-ସାଧନା,
ସେହି ପୂତ-କ୍ଷତ୍ରବଂଶ-ସମୁଦ୍ଭବ :
ଏହି ଦେବ୍ୟ-ଶାନ୍ତ-ମୂରତି-ସୌଷ୍ଠବ ।
ଏହି ଉତ୍କଳର ସୁଯୋଗ୍ୟ ନନ୍ଦନ,
ଏହି ଆର୍ଯ୍ୟଭୂମି ଗୌରବ-କେତନ ।
ଯୁକ୍ତ କରି ମାତୃ-ଛିନ୍ନ-ଅବୟବ,
ବଜାୟ ରଖିବେ ସ୍ୱଦେଶଗୌରବ ।
ଏହି ଗଞ୍ଜାମର ଅପୂର୍ବ କୀରତି
ଉତ୍କଳର ସୁଖ ଭବିଷ୍ୟ-ଉନ୍ନତି—
ଅଯତ୍ନେ ହୋଇଣ ପଥ-ପ୍ରଦର୍ଶକ,
ପୂର୍ଣ୍ଣଚନ୍ଦ୍ର ନାମ କରିବେ ସାର୍ଥକ ।
ଯେ ପଦ ପୂଜାର ଉପଯୁକ୍ତ ସ୍ଥଳୀ
ଅଟେ ଏ ତଲିବା ଗୃହୁ ତାସ୍ୱବଳ ।
ନିଦ୍ରିତ ହୃଦୟେ ଆଣ ରେ ଚେତନା,
ଦୃଢପ୍ରାଣେ କର ପୂଜ୍ୟ-ଆରାଧନା ।"

ଏକାଳେ ଚିଲିକା କୂଳକୂଳ ଗିର,
ସ୍ୱରୂ-ଗନ୍ଧ-ସ୍ନେହୀ ସୁମନ୍ଦ ସମୀର,
ଭାଙ୍ଗିଦେଲା ନିଦ୍ରା, ଭାଙ୍ଗିଲା ଜଡ଼ତା,
ନ ଶୁଣିଲା ଆଉ ସେ ଶୁଭ ବାରତା ।
ନିଜଧାମେ ଗଲା ଅମର-ନିଃସ୍ୱନ,
ପ୍ରାଣେ ଢାଳି ଦେଇ ସୁଧାପ୍ରସ୍ରବଣ ।
ସେ ଦୈବବାଣୀର ପଦ ଅନୁସରି,
ରାଜ-ପଦ-କଞ୍ଜ ହୃଦୟେ ସୁମରି,
"ଜୟ-ପୂର୍ଣ୍ଣଚନ୍ଦ୍ର" ବୋଲି ପ୍ରଣମିଲି,
ଆର୍ଯ୍ୟକୁଳ-ଚନ୍ଦ୍ର ପରିଚୟେ ମଣିଲି ।
"ଚିଲିକା ଅଟୁ ତୁ ମୋ ଦେଶ ମହତ
ମୋ ଦେଶବାସୀଙ୍କୁ କେତେ ପୂଜାରତ୍ୟ
ଶିଖାଇ ଶୈଳକୁ ସ୍ୱରୂ ସାଜିଛଳେ,
ସୌନ୍ଦର୍ଯ୍ୟ-ସମ୍ପଦ ବିସ୍ତି ଏ ଉତ୍କଳେ ।
ଓଡ଼ିଶା ଦକ୍ଷିଣ-ସୀମାନ୍ତ-ବାସିନୀ—
ଭାବ-ପ୍ରସ୍ରବଣ ପକ୍ଷି-ବିଳାସିନୀ—
ସୀମନ୍ତିନୀକୁଳ ପ୍ରିୟ-ପତି-ସଙ୍ଗେ
ନାବବକ୍ଷେ ଗମି ତୋହର ତରଙ୍ଗେ,
ପୂଜନ୍ତି ନୀଳାଦ୍ରିଦେବଙ୍କ ଚରଣ :
ଭବ-ବାରିଧିର ମୁକତି-ଅଯତନ ।
ରାଧାନାଥ-ହୃଦ-ଆହ୍ଲାଦ-ଦାୟିନୀ
ଅଟୁ ତୁ ଚିଲିକା ତରଙ୍ଗହାସିନୀ ।
ଶାରଦୀୟ-ଜ୍ୟୋତ୍ସ୍ନା-ଆଲୋକିତ ବକ୍ଷ
ଅଟେ ତୋର ସ୍ୱର୍ଗ-ବିରଳ ପ୍ରତ୍ୟକ୍ଷ ।

ଊଷା ଆଗମର ଅରୁଣ କିରଣ,
ସ୍ୱର୍ଣ୍ଣ-ରକ୍ତ-ରାଗ-ରଞ୍ଜିତ-ଗଗନ,
ଅଟଇ ତୋହର ସୁଷମା-ସମ୍ପଦ,
ଜଗଜ୍ଜନ-ମନ-ମୋହନ, ବରଦ ।
ତୁହି ଉତ୍କଳର ସୌନ୍ଦର୍ଯ୍ୟପସରା,
ଉତ୍କଳବାସୀଙ୍କ ଦୁଃଖ-ତମୋହରା ।
ତୋର ପଦକଞ୍ଜେ ଥାଉ ମୋ ହୃଦୟ,
ଉତ୍କଳର ଭାଗ୍ୟରବି ସମୁଦୟ
ହେଉ ଚୁମ୍ବି ସ୍ୱର୍ଣ୍ଣ-ଘଣ୍ଟଶୈଳ ଶିର,
ନବ ଭାଗ୍ୟରାଗେ ରଞ୍ଜି ତୋର ନୀର ।"



## ସ୍ୱର୍ଗତ ହରିହର *



"ଧନ୍ୟ ହରିହର ନୃପତିଶେଖର
ଉତ୍କଳମାତାଙ୍କ ସୁଯୋଗ୍ୟ ସୁତ,
ଯଶ ଦେହେ ତୁମ୍ଭେ ଅଜର, ଅମର
ଧନ୍ୟ ତବ ଜ୍ଞାନ ବୁଦ୍ଧି ଅଦ୍ଭୁତ ।
ଧନ୍ୟା ଖଲିକୋଟ ସମୁଜ୍ଜ୍ୱଳ ରାଷ୍ଟ୍ର—
ନୀତି ଯୋଗେ ଯାର ମୁଖ ଉଜ୍ଜ୍ୱଳ,

* ଶ୍ରୀ ହରିହର ମର୍ଦ୍ଦରାଜ ଦେବ ୧୮୭୧ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୧୦ ତାରିଖରେ ଖଲିକୋଟରେ ଜନ୍ମଗ୍ରହଣ କରିଥିଲେ ।

ଯା ବକ୍ଷେ ଜନମି ରକ୍ଷିଗଲ ଦେବ
ବନ୍ଧୁଦର୍ଶିତାର କୃତି ବିମଳ ।
ସୁଷମାଶାଳିନୀ ନିର୍ମ୍ମଳ ନିର୍ଝର
ବିହଙ୍ଗମଧୁର କଣ୍ଠଶବଦେ
ହୋଇ ମୁଖରିତ ଶୁଭ୍ର ବାରିଧାରା
ଢାଳଇ ଯାହାର ପଙ୍କଜ ପଦେ,
ନଭଚୁମ୍ବୀ ଶୃଙ୍ଗ ତୁଙ୍ଗ ଗିରିମାଳା
ଘେରି ରହି ନୀଳ ପ୍ରାଚୀରବତ,
ନିତ୍ୟ ନବ ଶୋଭା ବଢ଼ାଇ ଯତନେ
ଖଟନ୍ତି ଯା ପଦେ ଅନବରତ.
ସୁରବାଳା ପ୍ରିୟ ବିହରଣଯୋଗ୍ୟ
ଧନ୍ୟ ସେହି ତବ ପବିତ୍ରସ୍ଥଳୀ,
ଲିପିବଦ୍ଧ ଯହିଁ ଅକ୍ଷୟ ଅକ୍ଷରେ
ମର୍ଦ୍ଦରାଜ ଯଶଗରିମାବଳୀ ।
ବୀର ମର୍ଦ୍ଦରାଜ କ୍ଷତ୍ରିୟବଂଶ ଆହା
ପରିଚିତ ଯାର ଜଗତ ଜନେ,
ସେହି ପରିବାରେ ଜନ୍ମ ଲଭି ଦେବ
ଢାଳିଥିଲ ମନ ମାତୃଚରଣେ ।
ମଧୁର ଶୈଶବେ ଯଥାକାଳେ ଲଭି
ଅସ୍ତ୍ରଚାଳନାର ସିଦ୍ଧି କୌଶଳ,
ବହୁବିଧ ଶାସ୍ତ୍ର ଅଧ୍ୟୟନେ କ୍ରମେ
ନିତ୍ୟୋଜ୍ଜ୍ୱଳ ମନଃପ୍ରାଣ ବିମଳ ।
ଉଦିଲା ଅନ୍ତରେ ହୃଦବିହାୟସେ
ଜ୍ଞାନରବି ଯାର ଶୁଭ୍ର ମୟୂଖ,

ସମ୍ପାଦିଲ କୋଟି ନରନାରୀ ପ୍ରାଣେ
ପ୍ରେମୋଚ୍ଛ୍ୱଳମୟ ସ୍ୱର୍ଗୀୟ ସୁଖ ।
ପିତା ନାରାୟଣ ଥିଲେ ଏ ଉତ୍କଳେ
ନୃପତିସମାଜେ ଧାର୍ମିକବର,
ପିତୃଧର୍ମବଳେ ହେଲ ତୁମ୍ଭେ ହେଳେ
ଅଳପବୟସେ ଯୋଗ୍ୟ କୁମର ।
ଯଥାକ୍ରମେ ଗମି ପାରଲା, ମାନ୍ଦ୍ରାଜ
ଏହିମତେ ବହୁ ସୁଦୂର ସ୍ଥାନ,
ଅବହେଳାକ୍ରମେ କଲ ଉପାର୍ଜନ
କାଳୋଚିତ ଶିକ୍ଷା ସକଳ ଜ୍ଞାନ ।
ଦୂର ବିଦ୍ୟାଳୟେ ବିଦ୍ୟାଅଧ୍ୟୟନ
ସମାପନ କରି ପ୍ରଫୁଲ୍ଲମନେ,
ପିତୃସିଂହାସନ କଲ ଅଲଂକୃତ *
ଦେଖି ସୁଖୀ ହେଲେ ଜଗତଜନେ ।
ସାମ, ଦଣ୍ଡ, ଭେଦ ଆଦି ରାଜନୀତି
ପ୍ରଥା ଅନୁସରି ଅତି ଯତନେ,
ଧର୍ମବ୍ରତବଳେ କାୟ, ମନ, ବାକ୍ୟ
ନିୟୋଜିଲ ଦେଶହିତଚିନ୍ତନେ ।
ହରାଇ ପରାଣ— ତମ-ନାରାୟଣ
ହୋଇଥିଲେ ସର୍ବେ ଦୁଃଖେ ଅଧୀର,
ତବ ଆବିର୍ଭାବେ ସୁଖର ସମ୍ପଦ
ନିବାରିଲା କୋଟି ଲୋତକ-ନୀର ।

---

* ରାଜା ମହୋଦୟ ୨୧ ବର୍ଷ ବୟସରେ ୧୮୮୩ ଖ୍ରୀଷ୍ଟାବ୍ଦରେ ରାଜ୍ୟଭାର ଗ୍ରହଣ କରିଥିଲେ

କେବା ନବନାଶ ସବୁର ଅନ୍ତରୁ
ଘୁଞ୍ଚିଲା ପଲକେ ଶୋକଜଳଦସ୍ତି,
ହୃଦୟେ ହୃଦୟେ ଖେଳିଲା ନବୀନ
ସୁଖସଞ୍ଜୀବନୀ-ପୀଯୂଷଲହରୀ ।
ଅକଳତ କର— ନାରୀଙ୍କର ଯେଣୁ
ମଙ୍ଗଳ ସାଧନେ ହୋଇଲ ରତ,
ପ୍ରଜାପୁଞ୍ଜ ରାଜ— ସିଂହାସନ ତଳେ
ଖଞ୍ଜିଲେ ଚରଣଙ୍କଙ୍କରବତ ।
ଯହିଁ ଯାହା ଥିଲା ବିଳାସୋପଯୋଗୀ
ବସନ-ବାସନ-ଭୂଷଣମାନ
ରାଜ ଅବରୋଧେ ପୂର୍ଣ୍ଣ ହେଲା ଆସି
ସର୍ବେ କଲେ ତବ ମହିମା ଗାନ ।
ପ୍ରକୃତିଙ୍କ ଦୁଃଖ, ଯାତନା, ଅଭାବ—
ପଥେ ଅବତର ଅନବରତ,
ଏ ଦୀନା ଉତ୍କଳ— ଜନନୀଙ୍କ ତବ—
କଲ୍ୟାଣ ସାଧନେ ହୋଇଲ ରତ ।
ଉତ୍କଳ ପ୍ରକୃତ— ଗୌରବ ବର୍ଦ୍ଧନ
ଅଶେ ତଲକାର ପୂଜନକୁଞ୍ଜେ
ରମ୍ୟ ରାଜବାସ ରଚିଲ କେତେ
ଭୁବନଦୁର୍ଲ୍ଲଭ ସୌନ୍ଦର୍ଯ୍ୟପୁଞ୍ଜେ ।
କେ ଅବା ବର୍ଣ୍ଣିବ ସେ ପ୍ରାସାଦଶୋଭା
ଛବିଲ ଉତ୍କଳେ ସେ ଛବି କାହିଁ,
ଦେଖା ତ ନ ଥିବ ଯେତେ ଦୁଃଖ ଶୋକ
ଘୁଞ୍ଚିଯାଏ ଯାର ବଦନ ଗୃହିଁ ।

ଢାକା କଲିକତା          ସୁଦୂର ମାନ୍ଦ୍ରାଜ
ଆଦି ବହୁବିଧ ନଗରୁ ଆସି,
ଆଗନ୍ତୁକଗଣ          ନେତ୍ରକୁ ସାର୍ଥକ
ମଣନ୍ତି ଦେଖି ସେ ସୌନ୍ଦର୍ଯ୍ୟରାଶି ।
ଅଗ୍ରେ ଚିଲିକାର          ହ୍ରଦ ସୁବିଶାଳ
ବୀଚି-ବିତାଡ଼ନେ ମୁଖର ଅଛି,
ଅଦୂରେ ଶୋଭିତ          ସୁବିମଳ-ପର୍ଣ୍ଣି—
ଶ୍ୟାମଳିତ ବନ-ତରୁବ୍ରତତୀ ।
ହେ ଉତ୍କଳମାତା          ସୁଯୋଗ୍ୟ ସନ୍ତାନ
ଚିଲିକାର ଶୁଭ୍ର ତୀର-ସଦନେ
ବସି କେତେ ନବ          କଥା ଉଦ୍ଭାବନ
କଲ ପିତୃମୟ ପ୍ରଫୁଲ୍ଲମନେ ।
ଦେଖିଣ ତୁମ୍ଭଙ୍କୁ          ଭାରତ-ଶାସକ
ଅନୁଦିନ ଦେଶ କଲ୍ୟାଣେ ରତ,
ଉପାଧିମୁକୁଟେ          କଲେ ବିମଣ୍ଡିତ
କୁଳର ଗୌରବ ହେଲା ଉନ୍ନତ ।
'ରାଜା †' ସମ୍ମାନିତ          ପଦବୀକୁ ଲଭି
ମଣିଲ ଜୀବନ ଆନନ୍ଦମୟ,
ତୁମ୍ଭର ଗୌରବ          ଦେଖି ପ୍ରଜାପୁଞ୍ଜ
ହୃଦୁଁ ସର୍ବ ଦୁଃଖ ହେଲା ବିଲୟ ।
ସ୍ୱପ୍ନେ, ତନ୍ଦ୍ରାରେ          ଅବା ଜାଗରଣେ
ଥିଲ ଯେଣୁ ପର ମଙ୍ଗଳକାମୀ,

---

† ୧୮୯୮ ଖ୍ରୀଷ୍ଟାବ୍ଦ ମେ ମାସ ୨୧ ତାରିଖରେ ରାଜାପଦବୀ ପାଇଥିଲେ ।

ସରଳ, ସୁନ୍ଦର                    କୁମାରରତନ
        ହେଲେ ଦୟାମୟ ଅନ୍ତରଯାମୀ ।
ସେ ରୂପକୁ ଦେଖି                    ମନେ ହୁଏ ମନ୍ତେଁ
        ଅବତୀର୍ଣ୍ଣ ହବା ଅଯୋଧ୍ୟା ରାମ,
ଦୟାର ଆଧାର,                    ଗୌରବ-କେତନ,
        ସର୍ବଗୁଣାକର କରୁଣାଧାମ ।
ଉଚ୍ଚତର ଶିକ୍ଷା—                    ଶାଳା ସଂସ୍ଥାପନେ
        ହୋଇ ଏ ଗଞ୍ଜାମେ ବଦାନ୍ୟତମ,
ଦେଶ ଦେଶାନ୍ତରେ                    ସୁନାମ-ସୁଖ୍ୟାତି
        କରଗଲ ଦେବ ହେଲେ ଅର୍ଚ୍ଚନ ।
କେତେ ବାଣିପୁତ୍ର                    ଉଚ୍ଚ ବିଦ୍ୟାଭ୍ୟାସ
        ସେହି ଖଲିକୋଟ କଲେଜେ ଲଭି,
ପୂଜ୍ୟ ନାହାନ୍ତି ବା                    ଜନନୀ ପଦ୍ମର
        ଢାଳ ସୁବିମଳ କାବ୍ୟମଞ୍ଜରୀ ।
ଅଦ୍ୟାବଧି ତହିଁ                    ଶତ ଉତ୍କଳୀୟ—
        ଯୁବା ଶିକ୍ଷା ଲଭି ପ୍ରଫୁଲ୍ଲମନେ,
ଜୀବନର ଲକ୍ଷ୍ୟ—                    ଭାଗ୍ୟ ଗଢୁଛନ୍ତି
        ପ୍ରଶଂସି ଭୂମିର ଉଦାରପଣେ ।
ଦେଶବାସୀଙ୍କର                    ଯାତନା, ବେଦନା
        ଦୂରାଇବା ଅଶେ ହୋଇ ପ୍ରୟାସୀ,
ମାତୃ ସାହିତ୍ୟର                    ଗର୍ବର ସମ୍ପଦ
        ପ୍ରଜାବନ୍ଧୁ, ପତ୍ରି ଥିଲ ପ୍ରକାଶି ?
ନଖିଲ ଉତ୍କଳ—                    ମହାସମ୍ମିଳନୀ
        କରାଇ ଆଗତ ଉତ୍କଳ ଧାମେ,

ଏକତାର ମନ୍ତ୍ର କରିଲ ପ୍ରଚାର
ବହୁ ପୁରପଲ୍ଲୀ, ନଗରଗ୍ରାମେ ।
ସ୍ୱଦେଶ ମିଶନ— ଆନ୍ଦୋଳନ-ରଣେ
ଢାଳି ଶେଷତମ ଶୋଣିତବିନ୍ଦୁ,
ଛ ଗୌରବ— ବିଦ୍ୱାସ୍ୱସ-ଭାଲେ
ହେଲ ଅଦ୍ୱିତୀୟ ଉତ୍କଳ-ଇନ୍ଦୁ ।
ବିଧବାବିବାହ ଆଦି ନାନାବିଧ
ଜାତୀୟ ସଂସ୍କାର ଉନ୍ନତିପଥେ
ମନଃପ୍ରାଣ ଦେଇ ଜୀବନର ସାର୍ଥ—
କତା ଲାଭ କଲ ବହୁଳ ମତେ ।
ଉତ୍କଳର ସର୍ବ— ଉନ୍ନତି ସାଧନ
ପାଇଁ ଧନ ପ୍ରାଣ ନିଃସ୍ୱାର୍ଥ ମନେ
ଦେଇ, ନରଦେହେ ଅମରତା ଲଭି
ଗଲ ତୁମ୍ଭେ ଏହି ପ୍ରିୟ ଭୁବନେ ।
ଜାତୀୟ ଶିକ୍ଷାର ଚିରସହାୟତା
କରି ଅନୁଦିନ ନିବିଷ୍ଟଚିତ୍ତେ,
ଧନହୀନ ଛାତ୍ର ଦେଖି ଅକାତର
ମୁଦ୍ରା ଦେଉଥିଲ ସ୍ୱଦେଶ ହିତେ ।
ନିଜେ ଥିଲ ତୁମ୍ଭେ କୋବିଦପ୍ରବର
ସେବି ସଦା ବୀଣାପାଣି-ଚରଣେ,
ବିମଳ ଉତ୍କଳ— କାବ୍ୟକମଳିନୀ
ଫୁଟାଇଲ ମାତୃଭାଷା ବଦନେ ।
ସେ କାବ୍ୟରାଶିର ସୁଦିବ୍ୟ ସୌରଭ
ଅଦ୍ୟାବଧି ଅଛି ଜଗତ୍ ଭରି,

ହରିହର ନାମ           ଅକ୍ଷୟ ଅକ୍ଷରେ
ଆର୍ଯ୍ୟ ଇତିହାସ ରଖିଛି ଧରି ।
ମୃତ୍ୟୁ ଶେଷସୀମା           ଅଟେ ମାନବର
ତେଣୁ ଗଲା ଦେହ ମାଟିରେ ମିଶି,
କିନ୍ତୁ ଯଶଦେହେ           ଉତ୍କଳର ଭାଗ୍ୟ—
ଭାଗ୍ୟ ଗଢୁଅଛି ଦିବସ ଜଣି ।
ଉତ୍କଳୀୟ ମାନେ           କେ ନ ଜାଣେ ତବ
ଅପୂର୍ବ ସାଧନା ଅପୂର୍ବ ପଣ,
ଆର୍ଯ୍ୟଜାତିସୂତା—           ସ୍ୱାଧୀନ ସଂଗ୍ରାମେ
ଢାଳିଦେଲ ଧନ, ମାନ, ଜୀବନ ।
ଖ୍ୟାତ ନୀଳମଣି,           ଫକୀରମୋହନ—
ଆଦି ଉତ୍କଳର ବାଣିକୁମର
ଥିଲେ ଦେବ ତବ           ସମସାମୟିକ,
ତବ କୃପାବଳେ ଉତ୍ସାହଭର
ହୋଇ କେତେ କାବ୍ୟ           ପୁରାଣ ବିରଚି
ଜନ୍ମଭୂମି ମୁଖ କଲେ ଉଜ୍ଜ୍ୱଳ,
ରାଜାର ସହାୟ           ଅଟେ ସିନା ସଦା
ଦୀନ ଲେଖକର ତରସମ୍ବଳ ।
ପତ୍ନୀ ଥିଲେ ତବ           କୃପାର କେତନ
ଅନ୍ନଦାତ୍ରୀ ଅନ୍ନପୂର୍ଣ୍ଣାଙ୍କ ସମ,
ଦୁଃଖୀର ଯାତନା           ଦେଖି ଦୁଃଖେ ତର-
ବିଗଳିତ ଥିଲା ଯାହାଙ୍କ ମନ ।

---

ହଠାତ ହୃଦପର ୧୯୦୯ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୨୦ ତାରିଖରେ ସ୍ୱର୍ଗାରୋହଣ କଲେ ।

ଭକ୍ତଭୂମି ରାଜ— କୁଳର ଆଦର୍ଶ
ଦେଖାଇବା ଅଛେ ଗଞ୍ଜାମେ ଆସି
ଆଜ୍ଞ ଉଦାରତା ଅନୁକମ୍ପାବଳେ
ମୋହିଥିଲେ କିବା ଗଞ୍ଜାମବାସୀ ?
କେନ୍ନ ରାଜ୍ୟେ ସ୍ଥାପି କେନ୍ନ ବିଦ୍ୟାଳୟ
ସୂଜାଇ ସଂସ୍କାର ଉନ୍ନତ ଅଛେ
ଘେନୁଛନ୍ତି ରାଜ୍ୟ— ବାସୀଙ୍କ ସମ୍ମାନ
ରହି ସୁବା ଦୂର ଅମରବାସେ ।
ରାଧାକୃଷ୍ଣ ଭୁଙ୍ଗ— ମନ୍ଦିରୁ ଅଦ୍ୟାପି
ସାନ୍ଧ୍ୟ ଅର୍ଚ୍ଚନାର ମଙ୍ଗଳଗୀତ
ହୋଇ ନିଃସାରିତ ଖଲକୋଟବାସୀ—
ପ୍ରାଣେ ଉପୁଜାଏ ସ୍ୱର୍ଗୀୟ ପ୍ରୀତ ।
ପ୍ରଜାଙ୍କ ସନ୍ତୋଷେ ରାଜାର ଉନ୍ନତି
ଏହା ଅଟେ ବେଦ ଶାସ୍ତ୍ରର ତଥ୍ୟ,
କର୍ମ ଅନୁରୂପ ଫଳାଫଳ ସଦା
ଉପଭୋଗ କରେ ମାନବ ସତ୍ୟ ।
ସୃଷ୍ଟି କର ଦେଶ ସୃଷ୍ଟି କୁଳ ଆଶା
ରାଜୁ ପଦଯୁଗ୍ମ ରାଜ ସଧୀରେ,
କାହିଁଗଲ ଦେବ ରାଜ ପରିବାର
ଭସାଇ ବିଷମ ସନ୍ତାପନୀରେ ?
ଭୂମିର ବିରହେ କଠୋର ଯାତନା
ଭୋଗୁଛି ବିଶାଳ ଉତ୍କଳ ଦେଶ,
ଏକାଧାରେ କେନ୍ଦ୍ର ଗୁନ୍ଥିଦେବ ଆଉ
ଛିନ୍ନଅବୟବା ମାତାର ବେଶ ?

ଜାତିର ଗୌରବ      ସାଧନେ ନିଯୁକ୍ତ
ନିୟୋଜିତ କର ଧନ ଜୀବନ,
ଉତ୍କଳୀୟ ପ୍ରାଣେ      ଢେଢାଇବ କେହୁ
ନବୀନ ଭାବନା ନବ ଚିନ୍ତନ ?
ଚିନ୍ତାଗତ ମନେ      ବସି ନିକାଞ୍ଚନେ
ଚିଲ୍କାର ଶୁଭ୍ର ମୋହନ ତୀରେ,
ଧୋଇଦେବ କେହୁ      ମାତୃପାଦ ଆଜ
ଗାଢ଼ତମ-ଦୁଃଖ-ଲୋତକ-ନୀରେ ?
ଉତ୍କଳସେବକ,      ହେ ମହାସାଧକ
ଆନ ଯେତେ କଥା ଦୂରେ ଉପେକ୍ଷି,
ସୁରଦଳେ ରହି      ଏ ପ୍ରିୟ ଭୁବନେ
ଶୁଭନେତ୍ରେ ସଦା ଥାଅ ନିରେଖି ।
ତବ ଆଶୀର୍ବାଦ—      ବଳେ ଉତ୍କଳର
ଘୁଞ୍ଚିବ ନିଶ୍ଚୟ ଯାବତ ଦୁଃଖ,
ଯୁଗରେ ଯୁଗରେ ଆସି      ପ୍ରବାହ ଆକାରେ
ଖେଳିଯିବ ବିଶ୍ୱବିଶାଳସୁଖ ।"



# ଅଶୋକ କୋଇଲି



କୋଇଲି ଲୋ କଣ୍ଠି ଢ଼େଉର ଶୁଣ ମୋ ବଚନ
ପଞ୍ଚବଟୀ ବନେ ଛନ୍ତି କୌଶଲ୍ୟାନନ୍ଦନ ଲୋ କୋଇଲି ।

,, ମୃଗଭ୍ରର ଘେନ ରଘୁନାଥ
ବନେ ବନେ ଖୋଜୁଥିବେ ଚାହିଁ ମୋର ପଥ ,, ।

,, ପ୍ରାଣେଶ୍ୱରୀ ମଣି ମତେ ବନେ
ଆଣିଥିଲେ ନାଥ ସେହୁ ନିବାଡ଼ କାନନେ ,, ।

,, ମୋ ବନ୍ଧନେ ଉପର ପରାଣ
ଧରଣ ରହିବେ ଅବା ରଘୁକୁଳରାଣ ,, ।

,, ବନେ ମୋତେ ଆଣିବାକୁ ନାହିଁ
କରୁଥିଲେ ପ୍ରଥମରୁ ଅଯୋଧାଗୋସାଇଁ ,, ।

,, ପତିସେବା ନାରୀର କରମ
ସୁଖେ ଅବା ଦୁଃଖେ ନାରୀ ପତିର ଅଧୀନ ,, ।

,, କାନ୍ତ ମୋର ଯେବେ ବନବାସୀ
ହେବେ କି ସୁଖ ଭୁଞ୍ଜିବି ରାଜସୁଖେ ଭାସି ,, ।

,, ଏହୁ କଥା ଭାଳି ନିଜ ମନେ
ଅଳି କଲି ପ୍ରଭୁଙ୍କର ଅଭୟଚରଣେ ,, ।

,, ଦୟାମୟ ପ୍ରଭୁ ରଘୁବୀର
ବାକ୍ୟେ, ବ୍ୟବହାରେ ସଦା ଅଟନ୍ତି ସଧୀର ,, ।

,, ଦୁଃଖ ମୋର ଦେଖି ଦୟାମୟ
କହିଲେ କାନନେ ମତେ ଆଣିବେ ନିଶ୍ଚୟ ,, ।

କୋଇଲି ଲୋ  ବନେ ବନେ ଅସିଲି ଗୋଡ଼ାଇ
ପ୍ରେମର ସମ୍ପଦ ମୋର କେ ନେଲା ଛଡ଼ାଇ ଲୋ କୋଇଲି ।
,, ପ୍ରାଣେ ମୋର ଥିଲା ଯେତେ ସୁଖ
ହରଇ୍ଛ ଦାରୁଣ ବିଧି ହୋଇଣ ବିମୁଖ ,, ।
,, ରାଜେଶ୍ୱରୀ ହୋଇଣ କାନନେ
ଭ୍ରମିବାକୁ ଲେଖା ଥିଲା ମୋହର କରମେ ,, ।
,, ପିନ୍ଧି ଅଙ୍ଗେ ପଲ୍ଲବ ବସନ
ଭୁଞ୍ଜି ବନେ ବନ୍ୟ ଫଳ ମୂଳ ଅନୁକ୍ଷଣ ,, ।
,, ନ ସରିଲା ଦୁଃଖ ଏ ବିପତ୍ତି
ପକାଇଲେ କାହିଁ ଆଣି ପ୍ରଭୁ ବିଶ୍ୱପତି ? ,, ।
,, ରହି ସଦା ପ୍ରିୟପତି ମେଳେ
ବନବାସ-କଷଣ ମୁଁ ନ ଗଣିଲି ହେଳେ ,, ।
,, କାନ୍ତ ଯେଣୁ ମୋ ପାଇଁ ଅନ୍ତର
ବସୁର ପ୍ରାସ୍ୟେ ମଣିଲି ଧନକ ମାତର ,, ।
,, କି ବୁଝି କରିବ ଯିବ କାହିଁ
ରକ୍ଷିବାକୁ ବିପ କାହିଁ ଦେବୁ କି ଅଣାଇଁ ,, ।
,, ତେଜିବି ଯେବେ ଏ ଜୀବ ଛାର
ଦାଶରଥିପଦେ ଦ୍ରୋହ ହେବ ସିନା ସାର ,, ।
,, ମୃତ୍ୟୁରାଜ୍ୟେ ସୁଖର ନିର୍ବାଣ,
ମାତ୍ର ସାଧୁଜନେ * ତହିଁ ମିଳେ ପରିତ୍ରାଣ ,, ।

---

* ତହିଁ — ମୃତ୍ୟୁରାଜ୍ୟର ସନ୍ଧାନ

କୋଇଲି ଲୋ ଏହି ଦୁଃଖେ ଏ ପୋଡ଼ା ପରାଣ
ଧରିବା ମରଣଠାରୁ ନ୍ୟୂନ ଅଟେ ଜାଣ ଲୋ କୋଇଲି ।
,, କାନ୍ତ ମୋର ରାଜରାଜେଶ୍ୱର
ଭାଗ୍ୟଦୋଷୁଁ ଭୁଞ୍ଜିଲି ମୁଁ ଏ ଦୁଃଖ ଜକର ,, ।
,, କହ କେଉଁ ନୃପତିନନ୍ଦିନୀ
ଅଛି ମୋହି ସମ ଭବେ ପରମ ଦୁଃଖିନୀ ,, ।
,, ରାଜପୁରେ ସମସ୍ତଙ୍କ ବ୍ୟଥା
ହରୁଥିଲି, ଏବେ କେ ନ ଶୁଣେ ମୋର କଥା ,, ।
,, ରାଣୀଗଣ ରୋଧୁଥିଲେ ପଥ
ସବୁ ଏଡ଼ି ଆଟରିଲି କପାଁ ମୁଁ ଏମନ୍ତ ? ,, ।
,, ମହତଜନର ଉପଦେଶ
ଗ୍ରହଣ ନ କଲେ ଲଭ୍ୟ ହୁଏ ସିନା କ୍ଲେଶ ,, ।
,, ଏ ତ ଜନେ ଅରଜିବା ଫଳ
ଜାଣି ଦୂରେ ଫିଙ୍ଗି ଦେଲି ସମ୍ପଦ ସକଳ ,, ।
,, ସେତ ମୋର ପ୍ରାଣର ସଞ୍ଚାଳ
ପଦ୍ମିନୀ ଜୀବନେ ଭବେ ଯଥା ଅଂଶୁମାଳ ,, ।
,, ବୀରେଶ୍ୱର—ରାମ ରଘୁମଣି
ଯା'ର ପାଦଭରେ କମ୍ପି ଉଠଇ ଧରଣୀ ,, ।
,, ବୀର ପର୍ଶୁରାମଦର୍ପହର
ସୁବାହୁ, ତାଡ଼କାଅରି, ଧାର୍ମିକ-ପ୍ରବର ,, ।
,, ସେହି ରଘୁବରଙ୍କ ଘରଣୀ
ଗୃହରାଇ ଆଣିଲା ବନୁ ଛାର ଲଙ୍କମଣି ,, ।
,, ପୂଜୁଥାନ୍ତି ଯଦ ପ୍ରଭୁପଦ
ଦେଇଥାନ୍ତେ କଷ୍ଟେ ସେହି ଅଭୟ-ସମ୍ପଦ ,, ।

କୋଇଲି ଲୋ ଅବଶ୍ୟରେ କରିବା କରମ
ମହତ ଜନର କେବେ ନୁହଇ ଧରମ ଲୋ କୋଇଲି ।

,, ପରଦାରା, ପରଧନେ ଆଶ
ବଳାଇଲେ ଫଳେ ସଦା ହୁଏ ସର୍ବନାଶ ,, ।

,, ରାଜା ହୋଇ ଏ ତ ମନ୍ଦ କାମ
ବିନାଶକାଳରେ ବୁଦ୍ଧି ହୁଏ ସିନା ବାମ ,, ।

,, ହତାହତ ଜ୍ଞାନେ ଯେ ପାଷଣ୍ଡ
ତାର ହାତେ ଧାଡ଼ା ଦେଇଥାନ୍ତି ରାଜଦଣ୍ଡ ,, ।

,, ବନୁ ପର-ରମଣୀ ଚୋରାଇ
ଆଣି ପୁଣି କହୁଲେ ତ ନ ସରେ ବଡ଼ାଇ ,, ।

,, ଦେଖିଥିଲେ ରାମ ରଘୁବୀର
କ୍ଷଣକେ ଛିଣ୍ଡାଇ ଫିଙ୍ଗିଥାନ୍ତେ ଦଶଶିର ,, ।

,, ଯୋଗିବେଶେ ଆଣିଲୁ ଲଙ୍କେଶ,
କେହି ତ ନ ଥିବେ ତହିଁ ଦେବାକୁ ସନ୍ଦେଶ ,, ।

,, ସୀତେ ସୀତେ ବୋଲି ଡାକି ବନେ
ଖୋଜୁଥିବେ ପ୍ରାଣପତି ଆକୁଳିତମନେ ,, ।

,, ସଙ୍ଗେ ସଙ୍ଗେ ଥିବେ ତ ଲକ୍ଷ୍ମଣ,
ଦୟାମୟ-ଦାଶରଥି-ହୃଦୟ-ନନ୍ଦନ ,, ।

,, ତ ତୁଳନା ଅବା ତାଙ୍କୁ ଦେବା,
ବନେ ବନେ ଭ୍ରମି କଲେ ଭ୍ରାତୃ-ପଦସେବା ,, ।

,, ରାଜପୁତ୍ର ହୋଇଣ ଜଗତେ
ଭୋଗିଛି କଷଣ ଅବା କେହି ଏହି ମତେ ? ,, ।

,, କର୍ମ ମୋର ଅଟେ ଯେଣୁ ମନ୍ଦ,
ଗହନ-କାନନବାସୀ ହେଲେ ରାମଚନ୍ଦ୍ର ,, ।

କୋଇଲ ଲୋ ମୋହ ଯୋଗୁଁ ଭୀଷଣ ସମର
କରିବେ ତ ଦଶଶିର ସଙ୍ଗେ ରଘୁବର ଲୋ କୋଇଲି ।
,, ଧୀର-ସ୍ଥିର-ମତି ଗୁଣନିଧି
ଜନେ ମୋହ ସମ ପତ୍ନୀ ଦେଲେ କପାଁ ବିଧି ,, ।
,, କେହୁ ଅବା ସେହୁ ଘୋରବନେ
ତୋଷିବ ପରାଣ ସ୍ନେହ-ସଲିଳ-ସେଚନେ ,, ।
,, କେହୁ ଶୁଣାଇବ ମୃଦୁ ଭାଷ
କେହୁ ପ୍ରଭୁପ୍ରେମବହ୍ନି କରିବ ବିକାଶ ,, ।
,, କାନନ-ସଞ୍ଚାର ଅନ୍ତେ ପଦ—
ପଦ୍ମ ପ୍ରକ୍ଷାଳନ କେହୁ କରିବ ସମ୍ପ୍ରତ ,, ।
,, କେହୁ ଚାରୁପଲ୍ଲବ-ବ୍ୟଜନ
ଘେନି ପାଶେ ପାଶେ ସଦା କରିବ ଚାଳନ ,, ।
,, କରେ ଚାରୁ ଧନୁଶର ଦେଇ
ମୃଗୟାବିନୋଦେ ଆଉ ପଠାଇବ କେହି ,, ।
,, ଶୋଭାମୟ ଗୋଦାବରୀ ତୀର
ତହିଁ ଅନୁକୂଳ ଯାଉ ଶୀକର ସମୀର ,, ।
,, ନିସ୍ତବ୍ଧତାମୟ ସେ ବିଜନେ
କେ ଅବା ସେବିବ ଆଉ ସେ ସୌମ୍ୟ ଚରଣେ ,, ।
,, ବାରେ ପାଶୁଁ ହୋଇଲେ ଅନ୍ତର
କ୍ଷଣକୁ ତ ମଣୁଥିଲି ସୁଦୀର୍ଘ ବତ୍ସର ,, ।
,, ଏବେ ତାଙ୍କୁ ଭୁଲି ଅଜୀବନ
ରହିବା ତ ମୋହ ପକ୍ଷେ ନୁହେ ଶୋଭାବନ ,, ।
,, ଯେଉଁ ହନୁ ରଘୁମଣି-କର
ଧରିଛି ମଣିଲି ବଡ଼ ସୌଭାଗ୍ୟ ମୋହର ,,

କୋଇଲି ଲୋ ଯେତେଦିନ ପ୍ରଭୁ ପଦେ ଥିକା
 ତେତେଦିନ ଅତି ସୁଖେ ଥିଲି ଏ ସେବିକା ଲୋ କୋଇଲି ।
" ବନବାସେ ପତି-ସ୍ନେହ-ସୁଖ
 ଲଭି ହେଲେ ଚେଳିଥିଲି ହୃଦୟର ଦୁଃଖ " ।
" ପ୍ରଭୁ ଯେବେ ଇଚ୍ଛି ଥାନ୍ତେ ଭଲେ
 ଏ ଛାର ପରାଣ କଷ୍ଟେ ତେଜିଥାନ୍ତି ହେଲେ " ।
" କାନ୍ତ-ପଦେ ପ୍ରାଣ ଜନମୟ
 କରିବାକୁ ଦମ୍ଭେ ଧରିଅଛୁ ଏ ହୃଦୟ " ।
" ନେତ୍ରୁ ନୀର ନ ବହେ କ୍ଷଣତ
 ଯେଣୁ ଏ ଯାତନା ମୋର ଦୁଃଖର ଅତୀତ ଲୋ " ।
" ଅଜନମୁଁ ଭଲେ ଅପରାଧ
 କରି ନାହିଁ ଏ କି ଦଣ୍ଡ ଦେଲେ ପଦ୍ମପାଦ " ।
" ଧର୍ମପଥୁଁ ଦିନେ ତ ପଯ୍ୟର
 ଖସି ନାହିଁ ପ୍ରତିକୂଳ ହେଲେ ପରାତ୍ପର " ।
" ସତ୍ୟ ଯହିଁ ଧର୍ମ ସନାତନ
 ଦଇବ ପାମର ଗର୍ବ କରିବେ ଗଞ୍ଜନ " ।
" ମେଘାସନ୍ନ ଦେବ-ଦିନପତି
 ଦେଖିଥିଲେ ବନ୍ଧୁ ମୋତେ ଅଣିଲା ଦୁର୍ମତି " ।
" ସେ ତ ଚରପୁଣ୍ୟାଲୋକମୟ
 କେମନ୍ତ ସହିଲେ ଦେଖି କରୁଣାହୃଦୟ " ।
" ଅବତରି ଆସିଥାନ୍ତେ ଯେବେ
 ଏ ପୁରେ ବନ୍ଦିନୀ ମୁହିଁ ହୁଅନ୍ତି କି ତେବେ " ।
 ଦିନ ସିନା ହୁଅନ୍ତା ଯାମିନୀ
 ଉଦିତ ତ ଥାନ୍ତେ ସଙ୍ଗ-କୁଳସୀମନ୍ତିନୀ " ।

କୋଇଲି ଲୋ କାନ୍ତ ମୋର ଯେଣୁ ବଳୀୟାର
କରିବେ ନିଶ୍ଚୟ ଲଙ୍କାପୁରୀ ଛାରଖାର ଲୋ କୋଇଲି ।
„ ଏହି କଥା ଘେନି ପଶି ମନେ
ନୀରବ ରହିଲେ ଦେବ ଅନନ୍ତ ଗଗନେ „ ।
„ ଅବଧି ନ କରି ତପଁ ବଧି
ଅବନୀରେ ଅସିଥାନ୍ତେ କରୁଣାବାରିଧି „ ।
„ ତୁହେ ଯେଣୁ ମହତ ଭର୍ତ୍ତାର
ଧର୍ମଦେବ ବୋଲି ପଦେ ପୂଜଇ ସଂସାର „ ।
„ ସଦା ସ୍ଥିର ଅଟେ ଯାର ମତ
ଭୁଞ୍ଜଇ ସେ ଚରଣତଳେ ଅଖଣ୍ଡ ସମ୍ପତ୍ତି „ ।
„ ନହୁ ମୋର କର୍ମେ ହୋଇ ବାମ
ଏତେଦିନେ ପୂର୍ଣ୍ଣ କଲ୍ଲ ନିଜ ମନସ୍କାମ „ ।
„ ଚଉପାଶେ ଅପୂର୍ବ ଅପ୍ସରୀ
ଅକଳଙ୍କଭାବେ ସଦା ରହିଛନ୍ତି ପୂରି „ ।
„ ବେଳେ ବେଳେ ପାପିଷ୍ଠ ରାବଣ
ଅସି କେତେ ମତେ ଦେଖାଉଛୁ ପ୍ରଲୋଭନ „ ।
„ ଯାଉଅଛୁ ଅତୁଳ୍ୟ ସମ୍ପଦ
ପରମ ସମ୍ପଦ ମୋର ସେହି ରାମପଦ „ ।
„ ବହୁବିଧ ରତନ ଭୂଷଣ
ପାଖକୁ ପଠାଉଅଛୁ ଖଳ ଅନୁକ୍ଷଣ „ ।
„ ଦିନେ ହେଲେ ସେଥିପ୍ରତି ମନ
ବଳାଇ ନାହିଁ ତ ଏ ମୋ ପ୍ରତିଜ୍ଞା ବଚନ „ ।
„ କାନ୍ତ ଯାର ତ୍ରିଭୁବନପତି
ସେ କି ତଳ ପାରେ ଦେଖି ଏ ଛାର ସମ୍ପତ୍ତି „ ।

କୋଇଲି ଲୋ ତବେ ନାହିଁ ସମ୍ବାଦ ଏସନ
ରଘୁମଣି ପଦୁଁ ଯାହା ଫେରାଇବ ମନ  ଲୋ କୋଇଲି ।
,, ପ୍ରଭୁଙ୍କ ଚରଣେ ତୁ ନିବେଦ
ପାରନ୍ତୁ ଯଦି ମୋ କଥା, ଲଙ୍ଘି ଏ ବାରିଧି ,, ।
,, ଜନ୍ମ ତୋର ହୁଅନ୍ତା ସଫଳ
ଭୁଞ୍ଜାନ୍ତୁ ଜୀବନେ ଚରଣାନ୍ତ ସୁବିମଳ ,, ।
,, ତନୁ ତୋର ବାନ୍ଧିବ ନିସ୍ତନ୍ତୁ
ଲଙ୍ଘି ଏହି ସୁବିଶାଳ-ଜଳଧି-ନିଚୟ ,, ।
,, ସର୍ବତତ୍ତ୍ୱେ ଜ୍ଞାନୀ ରଘୁବର
କେଉଁ କଥା ତବେ ତାଙ୍କୁ ଅଛି ଅଗୋଚର ,, ।
,, ଜାଣିବେ ସେ ସକଳ କରଣି
ଦୁଷ୍ଟଜନେ ନାଶି ଉଦ୍ଧରିବେ ଏ ଧରଣୀ ,, ।
,, ଦୁଃଖ କେବେ ଦଅଇ ସମ୍ପଦ
ଧର୍ମର ଅଯତ୍ନେ ଯାହା ପକାଏ ବିପଦ ,, ।
,, ତୋର କଣ୍ଠ ସୁଧା-ସମସ୍ୱନ
,, ଶୁଣି ଅନୁଦିନ ସୁଖେ ଯାପିବ ଜୀବନ ,, ।



# ପୂଜା



(ରାଗ—ରାମକେରୀ)

ଆଶ୍ୱିନ ମାସର ଶୁକ୍ଳପକ୍ଷ ଦଶମୀ ତିଥି
ବିଜୟିନୀ ଦେବୀ ସଦନେ ଆଜ ହେବେ ଅତିଥି ।
ବିଜୟ ଦଶମୀ ନାମରେ ତେଣୁ ହୋଇବେ ଖ୍ୟାତ,
ଗୌରବ ସମ୍ପଦ ଅଟଇ ଉଚ୍ଚ ସ୍ନେହ ସଞ୍ଜାତ ।
ପ୍ରାଚୀ ନଭଭାଲେ ଉଇଁଲେ ଶୁଭ୍ର ଦିବସମଣି,
ନବ ରକ୍ତରାଗେ ରଞ୍ଜିତ କରି ସାରା ଧରଣୀ ।
ଦିଗଦିଗନ୍ତରେ ବସିଲା ଏବେ ଶୋଭାର ହାଟ,
ଶୋଭା-ସଦନର ଫିଟିଲା ଯିବା ମଞ୍ଜୁ କବାଟ !
ଅତିଥିଭବନେ ଗମିବେ ଆଜ ଦିବା ପ୍ରେୟସୀ
ଏହା ଭାବି ଦିନନାୟକ ରମ୍ୟ-ନୀଳ-ସରସୀ—
ହୃଦୟ ସରରେ ମଣ୍ଡିଲେ ସୌମ୍ୟ ସ୍ୱରଭସ୍ପୃଞ୍ଜ,
ଫୁଟାଇଲେ ଶୁଭ୍ର-କୁସୁମ-ବ୍ରାତ ତରୁନକୁଞ୍ଜେ ।
କାହିଁ ଶ୍ୱେତ, ପୀତ, ଲୋହିତ କାହିଁ କଷାୟ କାନ୍ତ
କୁସୁମନିବହ ସୁଷମ ଦର୍ପେ ଉଠନ୍ତି ମାତି ।
ସେ ସୌମ୍ୟ ମାଧୁରୀ ଝଲକା ପ୍ରାତଃ ଦେବୀ ହୃଦୟେ,
ରତ୍ନରାଜି ପ୍ରାୟେ ଶୋଭଲେ ନବ ପୁଷ୍ପନିଚୟେ,
ଠାବେ ଠାବେ ରତ୍ନଭୂଷଣ ସାଜ୍ ହିଷମ ମଣି,
ଜନ୍ମେ ଫିଙ୍ଗିଦେଲା ସୁମନ କୋପେ ପ୍ରାତଃ-ରମଣୀ ।

ବର୍ଜିତ ପ୍ରସୂନେ ରହିଲେ ନିଜ ଭାଗ୍ୟ ଆଦରି,
ସ୍ନିଗ୍ଧ-ଛାୟା-ଦାନୀ-ପାଦପ ପ୍ରିୟପାଦ ସୁମରି ।
ଶିରୋଭୂଷା ବାଳା ଝିଙ୍କିନୀ ଯେଣୁ ଅବନୀତଳେ
ପରକ୍ଷଣେ ଦୁଃଖେ ସଢ଼ିବ ସିନା ଏ ରବିତଳେ ।
ଲୁଣ୍ଠିବ ପଲକେ ଶୋଭାର ଏହି ଗୁରୁ-ଭୂଷଣ
ଶିରୀ ଉପେକ୍ଷିବା ଲୋକର ତବେ ଦଶା ଏସନ ।
ପ୍ରାତଃର ଏ ରୀତି ଦର୍ଶନେ ଆନ ଭାବନା ହୁଏଁ,
ପ୍ରକୋପତାଡ଼ିତ ହୃଦର ପରା ଏ ରୀତି ନୁହେ ।
ବିବର୍ଜିତ ନୁହେ ସୁମନ ନୁହେ ପ୍ରଭାତ ଭୂଷା,
ଦିବା-ଆଦ୍ୟ-ରୂପା ଊଷାଙ୍କ ମଞ୍ଜୁ ଚରଣଭୂଷା ।
ବିଭୂଷିତ କଣ୍ଠଚରଣେ ମଞ୍ଜୁ ମଞ୍ଜୀରନାଦେ,
ବିହଙ୍ଗକାକଳୀ ମଧୁପମଧୁଗୁଞ୍ଜନବାଦେ ।
ଶିର ଆଭରଣ ଆବର କାନ୍ତି କରୁ ପ୍ରକାଶ,
ବନ୍ଧୁଯୂଥେ ଊର୍ଦ୍ଧ୍ୱେ ଉଡ଼ନ୍ତି ଶୁକ, ଶାରୀ, ବାୟସ ।
ଊଷାସୁନ୍ଦରୀଙ୍କ ଅତିଥି ପୁର ପ୍ରୟାଣ ଜାଣି,
ଦିଗଙ୍ଗନାକୁଳ ସାଜିଲେ ଭୂଷା ଲାବଣ୍ୟଠାଣି ।
ସ୍ୱୀୟ ଶୋଭା ମୂଲ୍ୟେ କିଣିଲେ ପରା ସେହୁ ବଦନ,
ଦିବାକର-କର-ଦୋକାନୁ ଦିବ୍ୟଦ୍ୟୁତି-ଭୂଷଣ ।
ଦିଗବାଳାକୁଳ ଏରୂପେ ଜନନୟନ କିଣି,
ଭରଷା ପୋଷିଲେ ଊଷାଙ୍କ ହେବେ ଅନୁଗାମିନୀ ।
ଏକାଳେ ହୃଦୟେ ଜାଗଇ ପୁଣି ଭାବ ମହତ,
ନିଜେ କୃପାମୟୀ ପ୍ରସାରି ଯେବେ ଦିଅନ୍ତି ହସ୍ତ ।
ଦିବସ-ପ୍ରକାଶରୂପିଣୀ ଦିବ୍ୟ-ଦ୍ୟୁତି-ସମ୍ଭବା
ସେ କର ପରଶେ ହୃଦୟେ ମୋଦ ଲଭନ୍ତି ଅବା !

ସିଂହମର୍ଦ୍ଦିନୀଙ୍କ ଅତିଥି-ନିମନ୍ତ୍ରଣ-ସମ୍ଭାର—
ପ୍ରଶ୍ନର ସୂଚକ ଅଟଇ ପରା ଏହି ବେଭାର !
ହୀରା-ମୁଖ-ରୂପା ଉଷାଙ୍କ ଦିବ୍ୟ ଆଦ୍ୟ ପ୍ରକାଶ
ଗମୁଛନ୍ତି ପରା ଏକାଳେ ଦେବୀ-ବିଜୟବାସ !
ସେ ହିଅବନ୍ଦିତ ଯାହାର ପରା ସୁପରିଣାମେ
ପୂଜାର ବାସର ବିଜୟ ପୁଣ୍ୟ ଦଶମୀ ନାମେ
ଆଖ୍ୟାୟିତ ହେବ ଭବରେ ଏହି ଦଶମୀ ତିଥି
ଅଜୟ ବାସନା ମାନସୁ ସ୍ୱତଃ ଗଲାଣି ହତ ।
ଛବିରାଜ୍ୟେ ଜାଗେ ଭାବନା କିନ୍ତୁ ନ ଯାଏ ଦେଖା,
ଦେବୀ-ପ୍ରସାରିତ-ଶ୍ରୀକର-କାନ୍ତି-ଅମିୟ-ରେଖା ।
ପୂର୍ବେ ଥିଲେ ଏହି ଭାରତେ ଯେଉଁ ଶୂର ସନ୍ତାନ,
ଯାହାଙ୍କ ଗୌରବ-ଶଶାଙ୍କ ଭବେ ଚିର ଅମ୍ଳାନ,
ଥିଲେ ପରା ସେହି ସାଧନା-ରାଜ୍ୟେ ମହାସାଧକ,
ଧନ, ମାନ, ଜ୍ଞାନ, ଧଇର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟଶୀର୍ଷକ !
ସର୍ବଦର୍ଶୀ ଥିଲେ ସେ ଶୂରେ ସେହି ପୁଣ୍ୟ ଶୋଣିତ,
ଅଦ୍ୟାବଧି ଆମ ଧମନୀଧାମେ ହୁଏ ଶ୍ଚଳିତ,
କିନ୍ତୁ ସେହି ଶକ୍ତି ଲୁଚିଛି ଆମ ସ୍ୱଭାବଫଳେ,
ଅନ୍ୟାୟ ଅଧର୍ମ ଅନୀତି ପାପ-ପ୍ରଳାପ-ବଳେ !
ହତବୀର୍ଯ୍ୟ ହେଲା ଏ ଦେଶ ସର୍ବେ ଦେଲେ ଉପେକ୍ଷି,
ହୃଦଭିବୋଭବ-ସୌନ୍ଦର୍ଯ୍ୟ ଅମେ ନ ପାରୁଁ ଦେଖି ।
ଅତୀତର ଲୁପ୍ତ ସମ୍ପଦେ ଆଜ ହୋଇ ଉଦାସୀ,
କେଉଁ କାର୍ଯ୍ୟ ଅନ ପୂଜାରେ ଅବା ହେବା ପ୍ରୟାସୀ ?
"ଜୟ ମା ! ଜଗତତାରିଣୀ ଭୟହାରିଣୀ ମାତ !
ଦେଶ-ଭାଗ୍ୟାକାଶେ ପ୍ରକାଶ ଆଜ ଶୁଭ-ପ୍ରଭାତ !"

ଫେରୁ ଏହି ଦେଶେ ବିଗତ ଶିରୀ ସମ୍ପଦ ଧରୁ,
ଅତୀତର ଘନ-ତାମସ-ପୂର୍ଣ୍ଣ ସ୍ୱର୍ଣ୍ଣ-ଗରଭୁ ।
“ଫେରଆସ ଚନ୍ଦ୍ର, ଶ୍ୱେତବାନ, ପୂତ ଭାନୁବଂଶୀକ,
ଆସ ଗଙ୍ଗକୁଳମଣ୍ଡନ ଆସ ଧୀର ଦାମ୍ଭିକ ।
ଆସ ଆସ ବିଶ୍ୱବିଜୟୀ ଆସ ସ୍ୱାଧୀନଚେତା,
ବାଳ ଅଭିମନ୍ୟୁ ବିପୁଳ-ରଣବ୍ୟୂହ-ପ୍ରଣେତା ।
ଆସ କାଳିଦାସ କବିତାନନ୍ଦ-ଖଣି-ସ୍ୱରୂପ,
ଆସ ମାଘ କବିମଣ୍ଡନ କାବ୍ୟ-ବନ-ମଧୁପ ।
ଆସ ଭୂପଚନ୍ଦ୍ର, କୋବିଦକୁଳ ଗୌରବରବି,
ଚରଣ ପରଶେ ଧରଣୀ ବକ୍ଷ କରିବ ପବି ।
ଏରୂପେ ଅତୀତ ରାଜ୍ୟର ବୀର, ପ୍ରବୀଣଗଣ,
ଧର୍ମଉପଦେଷ୍ଟା, ପବିତ୍ର-ତପସାଧକ ଜନ,
ଏ ପୂତବେଳାରେ ସକଳେ ଶୁଭେ ହୁଅ ସ୍ୱାଗତ,
ଧରାବକ୍ଷେ ଦୀନ ଭାରତ ପୁଣି ହେବ ମହତ ।”
ବହିଲାଣି ଏବେ ଚୌଦିଗେ ନବ ପୂଜାର ବିଧି,
ସ୍ୱର୍ଣ୍ଣମୟୀ ବାମଲୋଚନା ପୁଂସ-ହୃଦୟ-ନିଧି—
ନିବିଡ଼ ବହାଇ ସରସୀନୀରେ ପ୍ରାତଃସ୍ନାନ,
କରୁଛନ୍ତି ପୂତ-ହୃଦୟେ ଭକ୍ତି-ଅମୃତ ପାନ ।
ଗ୍ରାମ ଉପକଣ୍ଠେ ରାଜଇ ଯେଉଁ ଶିବ ଦେଉଳ,
ସେହି ଦିଗ ଲକ୍ଷି ଗମନ୍ତି ମୋଦେ ବାମା ବିପୁଳ ।
କାହା ଅଙ୍ଗେ ଶୋଭା ପାଉଛି ଝୀନ ସୁନୀଳ ଶାଢ଼ୀ,
ରତ୍ନପ୍ରଭାଯୁତ ଚର୍ଚ୍ଚିତ ଶୁଭ୍ର-ନକ୍ଷତ୍ର ଧାଡ଼ି
ତଦୁପରେ ଶୋଭେ କି ଅବା ଦେଖି ତା ପଟାନ୍ତର,
ନୀଳ ନଭେ କିବା ଉଦିତ ଶୁଭ୍ର ତାରକାନିକର ।

ଅନ କେତ୍ତୁ ବାଲା ହୋଇଛନ୍ତି ଶ୍ୱେତ, ପୀତେ ପିହ୍ନିତା
କଷାୟବସନେ ଭୂଷିତା ଅବା କେଉଁ ବନିତା ।
ରମଣୀଙ୍କ ଅଙ୍ଗେ ଶୋଭିତ ସ୍ୱର୍ଣ୍ଣ-ଭୂଷଣ ମାଳ,
ବାମାବନେ କିବା ଆଗତ ପୂଜା-ବସନ୍ତକାଳ ?
ପଛେ ଆନ କେତେ ଯୋଦ୍ଧାଙ୍କ ମନ ଯାଉଛନ୍ତି ଉଦ୍ଧ,
କର୍ଦ୍ଦି କରତବେ ସର୍ବାଙ୍ଗେ ବେଢ଼ା ଘୋଷା-ଦଉଡ଼ * ।
ଏ ଗ୍ରାମର ପ୍ରାଚୀପ୍ରାନ୍ତରେ ହୁଏ ପ୍ରତୀୟମାନ;
ଗ୍ରାମଦେବତାଙ୍କ ମଞ୍ଜୁଳ ଯେଉଁ ଗୃହ ଆସ୍ଥାନ,
ତହିଁ ପୂଜାଯଜ୍ଞେ ପଡ଼ୁଛି ପଶୁ-ଜୀବନ-ବଳ,
ଦେବୀ ପ୍ରୀତବାସେ ସ୍ୱଜନ୍ମ ଏଥି କରୁଛି ବଳି ।
ଘାତକର ରକ୍ତରଞ୍ଜିତ ତୀକ୍ଷ୍ଣ-କୃପାଣଘାତେ,
ଏକ ପରେ ଏକ ଛାଗଳ ତହିଁ ମସ୍ତକ ପାତେ ।
ପ୍ରବାହ ଆକାରେ ତଳକୁ ବେଗେ ବହେ ରୁଧିର,
ଆରୁଣାକ୍ତ କରି ସୁନୀଳ ମଞ୍ଜୁ ଦ୍ରାବିଣୀ ନୀର ।
ଗ୍ରୀବାଛିନ୍ନ ହୋଇ ଛାଗଳେ ଏଥି ହୁଅନ୍ତି ମୃତ,
ଥୋକେ ଦେବୀ ଉପାସକଙ୍କ ସମ୍ମତ ଏ ଦୁଷ୍କୃତ ।
ସେ ଦୃଶ୍ୟ ଦର୍ଶନେ ନୟନୁ ନୀର ନିର୍ଝର ଝରେ,
ଦୁକ ଦୁକ ହୋଇ ବୁକରେ ମୂକ ହୃଦୟ ଥରେ ।
"ଅହେ ପୂତ ଦେବୀପୂଜକ ! ତବ ଏ କି କରଣି,
ପ୍ରାଣୀ ରକ୍ତସ୍ରୋତେ ରଞ୍ଜିତ କିପାଁ କର ଧରଣୀ ?
ଅନନ୍ତ ଯେ ଭବବାସୀଙ୍କ ସୁଖ-ଶାନ୍ତି-କାରଣୀ,
ସେ କି କେବେ ହେବା ସମ୍ଭବ ରକ୍ତ ଅଭିଳାଷିଣୀ !
ହୃଦେ ହୃଦେ ଯାଙ୍କ ଆଦେଶେ ବହେ ଜୀବନଝରୀ,
ପ୍ରକାଶିତ ଶଶୀ, ତପନ, ଗ୍ରହ, ତାରା-ବଲ୍ଲରୀ,

* ଘୋଷା (ଦେଶଜ) ଅବରୋଧ ପ୍ରଥା ।

ଚଉ ଭୁବନର ଅନ୍ତର୍ଯେହୁ ପରମ-ମାତ,
ପଶୁଙ୍କ ମସ୍ତକେ ଦେଖି ସେ ତୀକ୍ଷ୍ଣ-କୃପାଣ-ଘାତ,
ଅହତ ଜୀବଙ୍କ ହୃଦୟୁ ଦୁଃଖ ସହସ୍ରାକାରେ,
ଅନୁଭବୁଥିବେ ସିନା ହେ ପ୍ରତ-ଶୋଣିତଧାରେ ।
ଏ କି ତବ ମହାଦୁଷ୍କୃତ ଅହା ଏ କି କୁସିଦ୍ଧି,
ଅଧର୍ମ ଅରଜ ପୂଜାରେ କପାଁ ରତ ଅବଧି ?
ଉଦରବାସନା, ରସନା-ତୃପ୍ତି ସାଧନ ପାଇଁ,
ପରମ ସମ୍ପଦ ଧରମେ କପାଁ ଦଅ ହେ ଦାହି ?
ବଣରାଜଙ୍କର ରାଇଜେ ନେଇ ଅଯଥା ହୋଦା,
ପ୍ରାଣୀ ହୋଇ ପ୍ରାଣୀସମାଜେ କପାଁ ରତ ହେ ବୋଦା ?
ଭୁଞ୍ଜାଅ ହେ ଦେଶୁ ବହନ ହିଂସା-ବଳର ପ୍ରଥା,
ନାରକୀୟ କର୍ମ ସାଧନ ପୂଜାନୀତ ଅଯଥା ।
ହିଂସା, ଦ୍ୱେଷ ଅବ ବୃଜନେ ଯଦ ହେବ ବରାଗୀ,
ପ୍ରାଣୀ ହୃଦରାଜ୍ୟ ରାଜତ୍ୱେ ସିନା ହୋଇବ ଭାଗୀ !
ଅହିଂସାର ସ୍ୱର୍ଗ ଅୟନେ ସବେ ହୁଅ ହେ ଯାତ୍ରୀ,
ପାହିବ ଅଚିରେ ଭାରତ-ଦୁଃଖ-ତାମସ-ରାତ୍ରୀ ।"



# ଚାଲିଯାତ୍ରୀ



(ରାଗ—ବଙ୍ଗଳାଶ୍ରୀ)

ଦିନେ ଥିଲା ଆମ ଓଡ଼ିଶା ରାଇଜ
ସଂସାର ଭିତରେ ସାର,
ଘରେ ଘରେ ନିତି କେତେ ସୁନା, ରୁପା
ହେଉଥିଲା କାରବାର ।
ଶୋକପାସୋରା ଏ ପବିତ୍ର ଭୁବନ
ଧନଧାନ୍ୟେ ଥିଲା ଭରା,
ଆମ ଗଜପତି— ମାନେ ପାଳୁଥିଲେ
ପରା ଏ ଉତ୍କଳ ଧରା !
ମନେ ଅଛି ଦିନେ ଯବନ ସମ୍ରାଟ
ବଙ୍ଗ ଅଭିଯାନ କାଳେ
ନତଶିରେ କୃପା— ଭିକ୍ଷା ମାଗିଥିଲେ
ଆସି ଓଡ଼ିଆର ଦ୍ୱାରେ ।
ଓଡ଼ିଆର ସେହି ଅତୀତ ବିଭବ
ଅତୀତ ଗୌରବ କଥା,
ବେଳେ ବେଳେ ଆଜ ଜାଗିଲେ ଅନ୍ତରେ
ଜନମେ ବିଷମ ବ୍ୟଥା ।
ଅନ୍ନପୂର୍ଣ୍ଣା ପ୍ରିୟ- ଅଧିଷ୍ଠାନ ସ୍ଥଳୀ
ଅଟେ ଏ ପୁଣ୍ୟ ଉତ୍କଳ,
ଦେବ ଦେବୀଙ୍କର ମହିମା କୀର୍ତ୍ତନ
କରେ ଯହିଁ ଅବିରଳ ।

ମର୍ତ୍ତ୍ୟ-ବଇକୁଣ୍ଠ ନେଷ୍ଟି ଏ ଭୁବନ
ପ୍ରଭୁ ବିଶ୍ୱପତି ନିଜେ,
ନୀଳାଚଳ ଧାମେ ; ଦାରୁବ୍ରହ୍ମରୂପେ
କରିଛନ୍ତି ଯେଣୁ ବିଜେ ।
ବଡ଼ ଦାଣ୍ଡେ ଆଜି ଜଗନ୍ନାଥଙ୍କର
ଲାଗିଛି ରଥ ଉତ୍ସବ,
ସବୁରି ବଦନୁଁ ଝୁରଇ ମଧୁରେ
'ଜୟ ଜଗନ୍ନାଥ' ରବ ।
କୋଟି ନରନାରୀ ସମାଗମେ ଆଜି
ଧନ୍ୟ ହୋଇଛି ଏ ପୁରୀ ।
ଆର୍ଯ୍ୟ ଜଗତର ଅସୀମ ମହିମା
ରହିଅଛି ଯହିଁ ପୂରି ।
ନଗରୀର ଶୋଭା ପ୍ରତି ବିଲୋକିଲେ
ପ୍ରତୀତ ହୁଅଇ ମନେ,
ଧରିତ୍ରୀସୁନ୍ଦରୀ ଜନତାର ଘନ
ବହୁଛି କି ଅପଘନେ ।
ଲଙ୍ଘି ବହୁ ନଦ, ନଦୀ, ଗିରି, ବନ,
ବିଶାଳ ବାରିଧିବକ୍ଷ,
ଦେବ ଦରଶନ ଆଶେ ନରନାରୀ
ଆସୁଛନ୍ତି ଲକ୍ଷ ଲକ୍ଷ ।
ନୀଳାଦ୍ରିନାଥଙ୍କ ବିମଳ ଚରଣେ
ଢାଳି ନିଜ ନିଜ ମନ,
ବକ୍ଷେ ପୁଷ୍ପମାଳା ଲମ୍ବାଇ ହରଷେ
ବିହରନ୍ତି ଯାତ୍ରିଗଣ ।

ନବ ପଲ୍ଲବତା ନବ ପ୍ରଫୁଲ୍ଲତା
ରହିଛି ଦିଗନ୍ତ ଭରି,
ତରୁଣ ତରୁଣୀ ବଦନୁ ଝରଇ
ସଙ୍ଗୀତ-ସୁଧା-ଲହରୀ ।
କୋଟି କୋଟି ହୃଦ ଉଲ୍ଲସିତ ଆଜି
ତବ-ପାଦପଦ୍ମ ଧ୍ୟାୟି,
ଏକ ମାତ୍ର ପ୍ରାଣ ଭାସୁଛି ବିଷମ
ନୈରାଶ୍ୟ-ସାଗରେ ଯାଇ ।
ସିଂହଦ୍ୱାର ପାଶେ ଆସୀନା କିଶୋରୀ
ବିମଳ ବଦନ ଯାର,
ବିଷାଦର ଘନ ଆଚ୍ଛାଦନେ ହେଲେ
ଦିଶଇ ଅନ୍ୟ ଆକାର ।
ସୁନ୍ଦରୀ-ସମାଜେ ସାର ସେ ନାୟିକା
ବୟସେ ନବ ତରୁଣୀ,
ଅଛି କେ ଯୁବକ ନ ହେବ ସହଜେ
ତା ପ୍ରେମ-ସମ୍ବନ୍ଧେ ଋଣୀ ?
ଦୁଃଖେ ମୁଣ୍ଡ କୋଡ଼ି କାନ୍ଦୁଛି ଛଇଳା
ବିକଳ କରୁଣ ସ୍ୱରେ,
ନେତ୍ରୁଁ ଯୋଡ଼ିବାରି ହୋଇଣ ନିର୍ଗତ
ପଡ଼ୁ ଅଛି ଗଣ୍ଡସ୍ଥଳେ ।
ପଥେ ହରାଇଛି ଯେଣୁ ସ୍ୱୀୟ ସୁତ
ପରାଣୁଁ ଅଧିକତର,
ସନ୍ତାନ-ବିରହ— ଯନ୍ତ୍ରଣା-ଅନଳ
ଜଳୁଛି ହୃଦେ ପ୍ରବଳ ।

ଧନ ରେ ଧନ ରେ ବୋଲି ଅବିରତ
ଡାକ ଦେଇ ଉଚ୍ଚ ସ୍ୱରେ,
କହୁଅଛି "ବାପ କାହିଁ ଗଲୁ ଛାଡ଼ି
ନ ନେଇ ମୋତେ ସଙ୍ଗରେ ।
ନବ ମଲ୍ଲିକାର ବିମଳ ମାଧୁରୀ
ଜିଣା ତୋ କୋମଳ ତନୁ,
ଯେବେ ବା ଭୁଲିଲେ ଭୁଲେହେଁ ପାସୋରି
ଯିବ କି ଆଉ ମୋ ମନୁ ?
ରାକା ରଜନୀର ବିକଶିତ ଶଶୀ—
ସମ ତୋ ବଦନଛବି,
ଦରଶନ ସତେ ଏ ପୋଡ଼ା ପରାଣେ
ପାଇବ କି ଆଉ ଲଭି ?
ମାଆ ବୋଲି ଧନ ! ଦରସ୍ଫୁଟ ବଚନେ
କେ ଅବା ଡାକିବ ଆଉ,
ଯିବ କି ପାସୋରି ତୋ ସରୋଜ ଛବି
ଏ ଜୀବନ ଥାଉ ଥାଉ ?
ଜାଣି ତ ନ ଥିଲି ଏତେ ବେଗେ ଏଡ଼େ
ସ୍ନେହ ଦେବୁ ବୋଲି କାଟି,
କି ବୁଝି କରିବି ଶୋକରେ ଦୁଃଖିନୀ-
ହୃଦୟ ଯାଉଛି ଫାଟି ।
କେତେ ବାର ବ୍ରତ ଉପାସନା ଅନ୍ତେ
ତୋର ସ୍ନେହସୁଧା-ସୁଖ,
ଲଭିଥିଲି ତହିଁ ଦାରୁଣ ବିଧାତା
ହୋଇଲା ତରବିମୁଖ ।

ଜନମରୁ ଧନ　　　　ଅଛ ଯତନରେ
ପରାଣୁଁ ଅଧିକ ମଣି,
ପାଳଥିଲ ଗେଲେ　　　　କାହିଁ ଗଲୁ ଏବେ
ଅରେ ମୋ ନୟନ-ମଣି ?
ହେସ୍ଥ ବଚନର　　　　ମନ୍ଦ ପରିଣାମ
ଭୁଞ୍ଜିବାକୁ ଏହି ମତେ,
କେଉଁ ଜନମର　　　　ଭାଲେ ଲେଖା ଅଛି
କହ ଏ ପାପୀ ଜଗତେ ?
ନୀଳାଚଳଧାମେ　　　　ରଥ ମହୋତ୍ସବ
ହେବ ବୋଲି ଅନୁଷ୍ଠିତ,
ଜଗନ୍ନାଥଙ୍କର　　　　ପାଦେ ମନ ଛାଳ
ହୋଇ ଅଛ ଆନନ୍ଦିତ,
ଆସିଥିଲ ଧନ !　　　　ଏ ରମ୍ୟ ନଗରେ
ନ ଗଣି ପଥର କ୍ଲେଶ,
ଫଳେ ତାର ଏବେ　　　　ଦୁଃଖ-ଦାବାନଳ
ଦହୁଛି ହୃଦୟଦେଶେ ।
ଧର୍ମପଥେ ମନ　　　　ଦେଲେ ପୁଣି ଧନ !
ହୁଏ ଏହି ପରିଣାମ,
ବୋଲି ଜାଣିଥିଲେ　　　　କରି ତ ନ ଥାନ୍ତି
କଦାପି ମୁଁ ଏହି କାମ ।
ଦକ୍ଷିଣା ପବନେ　　　　ଖେଳୁଥିଲା ନାବ
ବଡ଼ ମନୋହର ଗତି,
ତୁ ପୁଣି ନବୋଧ　　　　ବାଳୁତ ଧନ ରେ
ଭୁଲିବେ ଚପଳ ଅତି

ତମୋମୟ ସେହି                ନିବିଡ଼ ନିଶୀଥେ
ବିକଳେ କରି କ୍ରନ୍ଦନ,
ଚେତାଇଲୁ ଯନ୍ତୁଁ                ନିଦ୍ରାଗତ ଜବେ
କହିଲା କ୍ରୋଧ ବଚନ ।
'ନ ନେଲା କାହିଁକି                ଏ ଅଧମ ସୁତେ
କାଳଯାୟୀ ଠାକୁରାଣୀ,'
ଯାହା ଶୁଣି ବୃଦ୍ଧ                ନାବିକର ପ୍ରାଣ
ଦୁଃଖେ ହୋଇଗଲା ହାଣି ।
ଅତିକ୍ରମି ବନ୍ଧୁ                ବନ, ଗିରି, କୁଞ୍ଜ-
ଚର୍ଚ୍ଚିତ ସୁଦୂର ପଥ,
କାଳଯାୟୀ ଗଣ୍ଡେ                କ୍ଷୁଦ୍ର ନାବ ଅସି
ହେଲା ଯନ୍ତୁଁ ଉପଗତ ।
ପ୍ରଳୟ ଆକାରେ                ନୀଳ ଊର୍ମିରାଶି
କରି ଭୀମ ଅଟ୍ଟହାସ,
ବିଦ୍ୟୁତବେଗରେ                ହେଲା ଅଗ୍ରସର
ତରୀ କରିବାକୁ ଗ୍ରାସ ।
ବହିଲା ଚୌଦିଗେ                ପ୍ରବଳ ମରୁତ
ଯେହ୍ନ ଉତ୍କଟ ମୂରତି,
ପ୍ରଳୟର ଖର-                ତର ସ୍ରୋତ ବି ବା
ବ୍ୟାପିଲା ଭବେ ଝଟିତ ।
ଦେଖି ପ୍ରକୃତିର                ସେ ଉଗ୍ର ତାଣ୍ଡବ
ଘୋର ବିପଦସଙ୍କୁଳ,
ଗାଢ଼ ନିକାଞ୍ଚନ                ସେ ହ୍ରଦ ଗରଭେ
ହୃଦୟ ହେଲା ଆକୁଳ ।

ନାବେ ନିଦ୍ରାଗତ ଥିଲା 'ଖର୍ଣ୍ଣ' ନାମେ
ନାବିକ ଜ୍ଞାନପ୍ରବର,
ଫେଡ଼ନ୍ତେ ନୟନ ଦେଖିଲା ଚୌଦିଗେ
ଦୃଶ୍ୟ ଅତି ଭୟଙ୍କର ।

(ବିଷଣ୍ଣ ବଦନେ ଉଠି ହୋଇ ଧୀର
କହିଲା ଉଚ୍ଚେ ସମ୍ବୋଧି,
"ଭାଗ୍ୟର ଅଲଂଘ୍ୟ ବିଧାନ ସହଜେ
ନ ପାରଇ କେହି ରୋଧି ।

ଭୋଗିବାକୁ ହବେ ଦାରୁଣ କଷଣ
ଭାଲେ ଥିଲା ଯେଣୁ ଲେଖା,
ପାର୍ଥ ବୀର ସ୍ୱୀୟ ପ୍ରାଣସଖାଙ୍କର
ନ ପାଇଲେ ଶେଷ ଦେଖା ।

ଲଭି ପତିରୂପେ ଜଗତ ଈଶ୍ୱର
ଅଯୋଧ୍ୟାର ନରତ୍ରାଣ,
ଜାନକୀ ସୁନ୍ଦରୀ ଅବନୀ ଗରଭେ
ଝାସିଲେ ନିଜ ପରାଣ ।

ଅଛି କେ ବୀରେନ୍ଦ୍ର କପାଳ ଲେଖନ
କରିବ ସହଜେ ଆନ,
ଘୋର ଅବିଶ୍ୱାସୀ କ୍ରୂର କାଳ ଭବେ
ଅଟେ ଅତି ବଳବାନ୍ ।)

ଅଦୂରେ ଶିଖରୀ ଦେଖୁଅଛ ଯାହା
ବିଶାଳ ମନ୍ଦର ସମ,
କାଳଯାତ୍ରୀଙ୍କର ହୋଇଅଛି ଜାଣ
ତହିଁ ପ୍ରିୟ ଅଧିଷ୍ଠାନ ।

ମହିମାୟ ଯାଁଙ୍କ ଅସୀମ ମହିମା
ବିଦିତ ଜଗତ ଜନେ,
କୃପାମୟୀ ସେହି ବିଶ୍ୱଜନନୀଙ୍କେ
ଦେଖୁ ମଣି ନିଜ ମନେ,
ଅତର୍କେ ବିମଳା କହୁଛନ୍ତି ଯେ ବାଣୀ
ହୃଦୟେ ରହିଛି ଜାଗି,
କେ ଅବା ଜାଣିଛି କହି କି ଉପାୟ
ତାର ପ୍ରତୀକାର ଲାଗି ।
ହୋଇ ନାହିଁ ଯଦି ବାଳକର ପ୍ରାଣ
ଦେବୀପଦେ ସମର୍ପଣ,
ଏ ଭୀମ ଗରଭେ ସମସ୍ତଙ୍କ ଆଜି
ନିଶ୍ଚିତ ଅଟେ ମରଣ ।
କି ବୁଦ୍ଧି କରିବି ସହିଲେ ଅବଳା
ଭାଳେ ଅରକ୍ଷଣ୍ଡ ଦୁଃଖ,
ପାଇବି କି ଆଉ ପ୍ରିୟ ସନ୍ତାନର
ଅସୀମ ସେନେହ ସୁଖ ।
ଏମ୍ନା କହି ବୃଦ୍ଧ ମିଳିଲା ରେ ଧନ
ଯହୁଁ ଏ ଦୁଃଖିନୀ ପାଶେ,
ଅନ୍ଧକାରମୟ ଏ ବିଶ୍ୱ ଭୁବନ
ଦିଶିଲା ବିଷମ ତ୍ରାସେ ।
କିରୁ ତହୁଁ ଆହା ପ୍ରିୟ ପ୍ରତିମାକୁ
ନେଲା ସେ ଖଳ ଛଡ଼ାଇ,
ନିଦାରୁଣ ବିହି ରଙ୍କରତନ ରେ
ଭାଙ୍ଗିଲା ମୋର ବଡ଼ାଇ ।

ସ୍ନେହବଶେ ଧନ ଯା'ଙ୍କୁ ମଣିଥିଲି
ପରାଣୁଁ ଅଧିକ ସମ,
ଚଲିକା ଗରବେ ଶେଷ ଲୀଳା ତାର
ଦେଖିଲି ପୋଡ଼ା ନୟନ ।
ଶୋଭାର ଚପଳା ମିଶଇ ଯେସନ
ସୁନୀଳ ଜଳଦ ଅଙ୍ଗେ,
ତେସନ ମୋ ସୁଖ— ଆଶାର ଅଲୋକ
ମିଶିଲି ହୃଦ ତରଙ୍ଗେ ।
ହୃଦୟ ଉଲ୍ଲାସେ କରନ୍ତି ସରବେ
ଧର୍ମର ମହିମା ଗାନ,
ଧର୍ମପଥେ ମନ ଦେଇ ମୋ କରମ
ହେଲା ଏଡ଼େ ହୀନମାନ ।
ସତିଙ୍କ ବଦନେ ଯେଉଁ ଧର୍ମବଳ
ଢାଳଇ ସାନ୍ତ୍ୱନା-ବାରି,
ଅଭାଗିନୀ ଭାଲେ ଆଜି ସେ ଧନ ରେ
ହୋଇଲା ଚିର ଭଗାରି ।"
ଏହିମତେ ବାଳା କାନ୍ଦି କାନ୍ଦି କେତେ
କହୁଛି ବିକଳ ବାଣୀ,
ସେ ବିଳାପଧ୍ୱନି ଶୁଣିଲେ ସହଜେ
ପ୍ରାଣ ହୋଇଯାଏ ହାଣି ।
ହୃଦୟ ସେ ଜାଣେ ସନ୍ତାନବିରହେ
ଜନନୀର କେଉଁ ଦୁଃଖ,
ସେ ଘୋର ଯାତନା ସହିବେ ବର୍ଣ୍ଣିବ
କହ କେ ଜ୍ଞାନୀପ୍ରମୁଖ ।

ବନ୍ଧୁମତେ ବାଲା    ବାନ୍ଧବ ବାନ୍ଧବ
ଦୁଃଖେ ଦେଉଅଛୁ ଘାର,
ତୁ ଅବା ଅଧିକ    କାନ୍ଦିବ ନୟନୁଁ
ଶୁଖିଅଛୁ ଅଶ୍ରୁବାର ।
ବେଳେ ବେଳେ ଅବା    ଉଠିଣ ହୃଦୟେ
ବାନ୍ଧୁଛୁ ବଲ ସାହସ,
ଯେତେ ଫେରାଇଲେ    ପୋଡ଼ା ମନ ତାର
ନ ହୁଏ ସହଜେ ବଶ ।
ନୀଳାଦ୍ରିନାଥଙ୍କ    ନୀଳଚକ୍ରକୁ ସେ
ଅନାଇଁ କହେ ସ୍ୱଗତେ,
“କେତେକାଳ ଦେବ    ଦୁଃସହ କଷଣ
ସହୁଥିବି ଏହୁ ମତେ ?
ତରିବାକୁ ହେଲେ    ଅସୀମ ତ୍ୱପଦ-
ମୟ ଭବପାରାବାର,
ତ୍ୱପଦ-ତରଣୀ—    ପୂର୍ଣ୍ଣ ଏ ଜୀବନ-
ପୋତେ ତୁମ୍ଭେ କର୍ଣ୍ଣଧାର ।
ଅନାଥର ନାଥ    ତ୍ୱମ୍ଭଦର ବନ୍ଧୁ
ବୋଲି ଭବେ ଅଛୁ କଥା,
ପଦ-ସେବକାକୁ    ଏତେ ଦୁଃଖ ଦେବା
ନୁହେ ତ ଦେବ ଅଯଥା ?
ତ୍ରେତାଯୁଗେ ପରି    ଅଯୋଧ୍ୟା ନଗରେ
ରାମରୂପେ ଅବତରି,
ରାମରାଜ୍ୟ ଖ୍ୟାତି    ରଖିଲ ପ୍ରଜାଙ୍କ
ହୃଦୟୁ ଦୁଃଖ ସଂହରି ।

ସଙ୍ଗେ ଘେନି ଭ୍ରାତ ଜନକନନ୍ଦିନୀ
ପାଳି ସାଧନାର ବ୍ରତ,
ପିତୃ ଆଜ୍ଞା ଧାର୍ଯ୍ୟ କରି ଶିରେ ବନେ
ଭ୍ରମିଲ ତାପସବତ ।
ବଧି ବାହୁବଳେ ଦଶଶିର ଅନ୍ଧ
ବୀର ମହା ବଳୀଆର,
ଧରାଧାମେ ରଘୁ— ବଂଶର ଅକ୍ଷୟ
ମହିମା କଲ ବିସ୍ତାର ।
ପ୍ରଜା ଅପବାଦ କଥା ଶୁଣି ଦେବ
ମାନସେ ହୋଇ ଚିନ୍ତିତ,
ସାଧ୍ୱୀଶିରୋମଣି ପ୍ରାଣର ପ୍ରିୟାଙ୍କୁ
ବନେ କଲ ନିର୍ବାସିତ ।
ଚିରଶାନ୍ତିପୂତ ପ୍ରାଣେ ଅହେ ଦେବ
ସାଧିବାକୁ ପ୍ରଜାହିତ,
ନୃପ ହୋଇ ଦୈନ୍ୟ ଯାତନା ଜୀବନେ
ଭୋଗିଲ ଅପରିମିତ ।
ଦେଖି ଶ୍ୟାମଳିତ ବନଗିରିକୁଞ୍ଜ-
ମୟ ଏ ପ୍ରିୟ ଭୁବନ,
ନୀଳାଚଳେ ଆଜି ସାକେତ ନଗରୀ
କରିଅଛ ସଂସ୍ଥାପନ ।
ଯେତେ ଦୁଃଖତମ ଏ ପୂନା ରାଜ୍ୟକୁ
କରିଥିଲା କବଳିତ,
ତବ ଆବିର୍ଭାବେ ଆଜି ସେ ସକଳ
ହୋଇଅଛି ଅପସାରିତ ।

'ମରାଳମାଳିନୀ ନୀଳାମ୍ବୁ ଚିଲିକା'
ତବ ଅନୁକମ୍ପା ବଳେ,
ନେତ୍ରବିମୋହନ ସୌନ୍ଦର୍ଯ୍ୟପସରା
ବାଢ଼ିଛୁ ସାରା ଉତ୍କଳେ ।
ତୁମରି ପ୍ରସାଦୁଁ ମହାନଦୀ, ଦୟା,
ମନ୍ଦାକିନୀ ଚନ୍ଦ୍ରୋଜ୍ଜ୍ୱଳା,
କରୁଛନ୍ତି ଏହି ଉତ୍କଳ ଦେଶକୁ
ତବ ସୃଜନା ସୁଫଳା ।
ତ୍ୟାଗୀ, ବୀର କେତେ ଯୋଗୀ, ଋଷି ତବ
ଚରଣେ ହୋଇ ଭିକାରୀ,
ମହାନନ୍ଦେ ଏହି ତପ୍ତ ବୈତରଣୀ-
ସ୍ରୋତ ହେଉଛନ୍ତି ପାରୁ ।
ଦ୍ରୌପଦୀର ଡାକେ କାନନକୁଟୀରେ
ହୋଇ ପରା ଆବିର୍ଭୂତ,
ଦୁର୍ବାସା ମୁନିଙ୍କ ମନ୍ଦ ଅଭିଶାପୁ
ଉଦ୍ଧାରିଲ ପଞ୍ଚ ସୁତ ।
କରୁଣାସିନ୍ଧୁ ! ସେ ଅନନ୍ତ ସାଗର
ଲୁଚାଇଛ ଆଜ କାହିଁ ?
ଗରୀବ ଜନଙ୍କ ଆର୍ତ୍ତ ଡାକ ଆଉ
ଶ୍ରବଣେ କି ଶୁଭେ ନାହିଁ ?
ଅସହ୍ୟ ଏ ଘୋର ଦାରୁଣ ଯାତନା
ପୋଡ଼ା କରମର ଫଳେ,
ମୁହିଁ ଅଭାଗିନୀ ପରା ଏକାକିନୀ
ଭୁଞ୍ଜିବି ଏ ଭବତଳେ ।

ଏହିମତେ ବାଳା କେତେ କେତେ କଥା
ନିବେଦି ପ୍ରଭୁଙ୍କ ପାଦେ,
ଅସ୍ଥିର ମାନସେ ନାନାଠାବେ ଯାଇ
ଭ୍ରମୁଛି ହୃଦ ବିଷାଦେ ।
ବେଳେ ବେଳେ ଶୁଭ୍ର ଭୃଙ୍ଗ ବାଳସ୍ତୂପଂ
ମସ୍ତକେ ଶୃଙ୍ଗ ପସୃର,
ଦେଖୁଛି ତଟରେ ତରଙ୍ଗକ୍ଷାଳିତ
ସୁନୀଳ ମହାସାଗର ।
ଯେଦିଗେ ଗମିଲେ ସେଦିଗେ ସୌନ୍ଦର୍ଯ୍ୟ
ଦିଶୁଅଛି ଆନ ଆନ,
ରଜତ ପର୍ବତ ପ୍ରାୟେ ଭୃଙ୍ଗବାସ
ଠାବେ ଠାବେ ବିଦ୍ୟମାନ ।
ଦେଖି କିସ ହେବ ସେ ରୂପମାଧୁରୀ
କାହିଁ ନ ବଳଇ ଚିତ,
ସୁଖ-ବିଳାସର ଲାଳସା ହୃଦୟେ
ଅଲକ୍ଷେ ରହୁଛି ଲୁଚି ।
ଯେତେ ଦିନ ଯାଏଁ ପୋଡ଼ା ପ୍ରାଣ ତାର
ନୋହୁଛି ପିଣ୍ଡୁଁ ନିର୍ଗତ,
ସେତେ ଦିନ କଷ୍ଟେ ସେ ଘୋର ଯାତନା
ରହିବ ହୃଦେ ଜାଗ୍ରତ ।
( କର୍ମ ଅନୁରୂପ ସୁଖ ଦୁଃଖ ନରେ
ଭୋଗନ୍ତି ବିଶାଳ ଭବେ
କିନ୍ତୁ ଦ୍ରୁତଗାମୀ କାଳ କାହାରିକି
ଅପେକ୍ଷା ନ କରେ ଲବେ ।)

ଗାଢ଼ ଦୁଃଖେ ବାଳା ସେ ମହା ନଗରେ
ଗମିଲା ବେନି ବାସର,
ଜନମଭୂମିର କଥାମାନ ଭାଳି
ଚିନ୍ତିତ ହେଲା ଅନ୍ତର ।
ନୀଳାଦ୍ରିଦେବଙ୍କ କମଳ ଚରଣ-
ପଙ୍କଜୁଁ ଘେନି ମେଲାଣି,
ଯେଉଁ ଦୁଃଖେ ଆହା ଫେରିଲା କମଳା
କେ ପାରେ ସେ କଥା ଜାଣି ।
ପଥେ ଶ୍ବବା ଘାଟେ କାନ୍ଦି କାନ୍ଦି ଶିଶୁ-
କମ୍ପିନା କୁରଙ୍ଗୀବତ,
ଖାଟଯୌତ ଶୁଭ୍ର ଚନ୍ଦ୍ରିକା ପୁଳିନେ
ହେଲା ଆସି ଉପଗତ ।
ଦୂରୁଁ ଦେଖି ବୃଦ୍ଧ ନାବିକ ଉଲ୍ଲାସେ
ଚଞ୍ଚଳେ ଆସିଲା ଧାଇଁ,
କହିଲା "ମା କାହିଁ ଥିଲୁ ଏତେ କାଳ ?
ତୋର ଆଗମନ ପାଇଁ ।
ଜଗି ଜଗି ଆମେ ହୋଇଥିଲୁଁ ସର୍ବେ
ମାନସେ ମୋର ଚିନ୍ତିତ,
ସୁଧାମୟ ମୁଖ ଦେଖି ତୋର ଏବେ
ହୃଦ ହେଲା ଆନନ୍ଦିତ ।"
ଏହା କହି ବୃଦ୍ଧ କମଳାକୁ ନାବେ
ବସାଇଲା ହୃଷ୍ଟମନେ,
ସୁରଗନ୍ଧଭର ସୁମନ୍ଦ ମରୁତ
ଚଳିଲା ନାବ ଯତନେ ।

ଲଙ୍ଘି ସୁବିଶାଳ ପଥ ବିହଙ୍ଗମ—
କଣ୍ଟକର ମୁଖଗତ,
ସୌନ୍ଦର୍ଯ୍ୟଶାଳିନୀ ରମ୍ୟ ପଦେ ନାବ
ହେଲା ଯହୁଁ ଉପନୀତ,
ଚାଳକାର ଗୃହୁ ସଲ୍ଲୁଁ ଶୁଭିଲା
ପ୍ରିୟ 'ମାଆ' 'ମାଆ' ସ୍ୱନ,
ଶୁଣି ସେହି ଡାକ ସନ୍ତୁଷ୍ଟେ ବିମଳା
ଚୌଦିଗେ ଚାଳି ନୟନ,
ନ ଦେଖିଲା କାହିଁ ସ୍ୱୀୟ ସନ୍ତାନର
ବଦନ ସୁଧାମଣ୍ଡିତ,
ବିଷମ ନୈରାଶ୍ୟ— ସଲିଲେ ପଶିଣ
ହେଲା ତାର ଅନ୍ଦୋଳିତ ।
ଏହି କାଳେ ଯାହା ହେଲା ସେ ଘଟଣା
ଅଟେ ଅତି ଚମତ୍କାର,
ଜଳେ, ସ୍ଥଳେ, ନଭେ କାନନେ, ପର୍ବତେ
ଘୋଟିଲା ଘନ ଅନ୍ଧାର ।
କାହୁଁ ଆସିଲା ଏ ବିଷମ ସଙ୍କଟ
ଭାଳ ସର୍ବେ ହେଲେ ବଣା,
ମାୟାବିନୀଙ୍କର ବିଷମ ରହସ୍ୟ
ନ ଗଲା କାହାକୁ ଜଣା ।
କ୍ରମେ ହେଲା ସେହି ଅଭୂତ ଘଟଣା
ବିଷମୁଁ ବିଷମତର,
ଉଡ଼ିଲେ ଚୌଦିଗେ ବିହଙ୍ଗମଗଣ
କରି ମହା କୋଳାହଳ ।

ଭୁଜଙ୍ଗମକୁଳ ଭ୍ରମିଲେ ବିଷମ
ଭାସେ ଦେଇ ଘୋର ଲକ୍ଷ,
ସେ ବୀଭତ୍ସ ଦୃଶ୍ୟ ଦେଖି ଅକଳତ
ହୃଦେ ଜନମିଲା କମ୍ପ ।
'ରଖ ମା' 'ରଖ ମା' 'କାଳଯାମ୍ୟୀ' ବୋଲି
ନାବିକେ ଧଇଲେ ସ୍ୱର,
ସେ କରୁଣ ଡାକ କୃପାମୟୀଙ୍କର
ଭେଦିଲା ଶ୍ରୁତି-ଗହ୍ୱର ।
ପଲକେ ଛୁଟିଲା ସେ ଘନ ଅନ୍ଧାର
ସେ ଭୀମ ରହସ୍ୟଲୀଳା,
ପ୍ରକୃତ ବଦନେ ବିକଶିଲା କ୍ରମେ
ନବସୌନ୍ଦର୍ଯ୍ୟର ଖେଳା ।
ଦିଗଦିଗନ୍ତରେ ଝଲସିଲା ଶୋଭା
ଅନନ୍ତ ଉତ୍ସବମୟ,
ପଶ୍ଚିମ ଗଗନେ ବାରୁଣୀ ରାଣୀଙ୍କ
ଦେଖା ସାନ୍ଧ୍ୟ ଅଭିନୟ ।
ତୀର କୁଞ୍ଜବନୁଁ ଶୁକ ଶାରିକାର
ବିମଳ କୋମଳ ସ୍ୱନ,
ପ୍ରାଣେ ପ୍ରାଣେ ଆଣି ଢାଳିଦେଲା ନବ
ପ୍ରୀତିସୁଧା-ପ୍ରସ୍ରବଣ ।
ପ୍ରଫୁଲ୍ଲ ବଦନେ ଜ୍ୟୋତିର୍ମୟୀ ଉଭା
ହୋଇ ବିମଳାର ପାଶେ,
ସନ୍ତାନକୁ ତାର କରେ ସମରପି
କହିଗଲେ ଅଟ୍ଟହାସେ ।

ହେନ ବତ୍ସେ ! ଏହି ପ୍ରୀତି ଉପହାର
କର୍ମ ଅନୁରୂପ ଫଳ,
ବହୁଥିଲି ଦଣ୍ଡ ଖସାଇଲୁ ଯେଣୁ
ଧରମପଥୁଁ ପଯୂର ।
ଧର୍ମ ଅଟେ ଉଚ୍ଚ ତହିଁ ନୀଚ ଆଶା
କରିବା ହୃଦେ ପୋଷଣ,
ଗୁଣିକସମାଜେ କହ ଶଶିମୁଖି !
ଅଟେ କି କେବେ ଶୋଭନ ।
ମାୟାମୟ ଭବ ମୃଗତୃଷ୍ଣିକାର
ଭ୍ରମେ ନ ହୁଅ ଗୋ ଧୀର,
ମାତା ହୋଇ ନିଜ ସନ୍ତାନର ସୁଖେ
ଅଛି କି କହ ଭଗାରୁ ।
କୃପାମୟୀ ମୁହିଁ ନରରକ୍ତେ କେବେ
ନୁହଇ ମୋର ପିପାସା,
ଧୀର ମଣି ଅହା ମହାଭ୍ରମ ତବ
ତେଜ ଗୋ ହୃଦୁଁ ଦୁରାଶା ।
ନିର୍ବୋଧ ମାନବ ମହାମୂଢ଼ ସଦା
କଳାପର ମଦେ ମତ୍ତ,
ହୋଇ ଅବିରଳ ଭାଗ୍ୟର ଅଯୂନ
ଗଢ଼ିଥାଏ ଇଚ୍ଛାମତ ।
ଉଚ୍ଚପଦେ ଆଶୀ ଉଚ୍ଚ ଅଭିଳାଷୀ
ହୋଇ କୋଟିଶିର ବଳ,
ଦିଅଇ ଯେ ପାପୀ କହ ଏ ଜଗତେ
ଅଛି କେ ତାଠାରୁ ବଳ ?

ପରପ୍ରାଣ ନାଶି ଆପଣାର ସୁଖ
କରିବା ଚିରକଳ୍ପନା,
ବହୁଦର୍ଶୀ ମାନ- ବର ପକ୍ଷେ ଅହା
ନୁହଇ କି ବିଡ଼ମ୍ବନା ?

ମର୍ତ୍ତ୍ୟ-ପଙ୍କିଳତା ମଧ୍ୟେ ଥାଇ ମନ
ସୁଖେ ହୁଏ ସଦା ବାଇ,
ନ ଜାଣେ କି ଭ୍ରମ କାଳ-ତରଙ୍ଗିଣୀ
ପଶ୍ଚାତେ ଆସୁଛି ଧାଇଁ ?

ବୃଥା ଧନ ମାନ ସମ୍ପଦର ଆଶେ
ହୁଅନ୍ତି ସର୍ବେ ଆକୁଳ,
ଭାଗ୍ୟଦେବୀ ପ୍ରିୟ ପ୍ରସାଦ ଜୀବନେ
ନୁହେ ଚିର ଅନୁକୂଳ ।

"କ୍ଷଣକାଳ ସିନା ଅଟେ ରସାସ୍ୱାଦ
ଭବର ଭଙ୍ଗୁର ସୁଖ,
ଧନ୍ୟ ସେ ସାଧକ ସେ ମହାତ୍ମାର
ହୁଏ ଯେ ଚିରବିମୁଖ ।"

ଧର୍ମେ ଯେଣୁ ମତ ଧର୍ମେ ଯେଣୁ ଗତ
ଧର୍ମେ ଯେଣୁ ତାର ଧ୍ୟାନ,
ବିମଳାକୁ ଏହା କହି ମାୟାବିନୀ
ହେଲେ ତହୁଁ ଅନ୍ତର୍ଦ୍ଧାନ ।।

# ଠାବ ।

( ରାଗ—ଗୌରୀ )



ମଙ୍ଗଳେ ଅଇଲା ଉଷା                ବକଚ କୁସୁମଭୂଷା

ହୃଦୟମୋହନ ଅଙ୍ଗେ ଭରି ଯତନେ,

ଶୋଭାର କମଳ ଶିରୀ                ଖେଳଇ କାନନ, ଗିରି

ଜଳ, ସ୍ଥଳ, ନଭ ଆଦି ସାରା ଭୁବନେ—

ଅସ୍ତ ଶଶୀ-ଛବି ରୁଚିର,

ଚୁମ୍ବି ନାଶି ଦୂର ନୀଳ ବାରିଧିନୀର । ୧ ।

ପ୍ରାଚୀ ନବ ଦିନକର                ନବ ମୟୂଖେ ଭାସ୍ୱର

ଦିଗଦିଗନ୍ତରେ ଶୋଭା ଉଠେ ଝଲସି,

କଶାନ୍ତ ଧୀରସମୀର                ଲଙ୍ଘି ନୀଳ ସିନ୍ଧୁନୀର

ସୁଧାଧାରା ହୃଦେ ଦେଉଅଛି ପରଶି—

ଡାଳେ ଡାଳେ ଫୁଲ୍ଲ ସୁମନ,

ବାଡାଧାଡେ ଦୋଳ ଦଶୁଅଛି ଯତନ । ୨ ।

ଏକାଳେ ଅଶୋକବନେ                ବସି ଚନ୍ଦ୍ରାଗତ ମନେ

ପଦ୍ମବରବିଧୂରା ରାମରମଣୀ,

ସ୍ୱଗତେ କହନ୍ତି କାହିଁ                କି ହେଲୁ ରଖିଛୁ ବାନ୍ଧି

ନାରୀଜନେ କହ କହ ରେ ଲଙ୍କମଣି,

ରାଜା ହୋଇ ଏ କି କରମ,

ପରଦାରା ହରଣ କି ରାଜଧରମ ?   ୩ ।

କେଡ଼େ ଧୀରସ୍ଥିରମତି    ଅହା ସେହି ରାମ ପତି
ନର ତ ନୁହନ୍ତି ସେହୁ ନିଶ୍ଚୟ ହରି,
ସେହି କୋହ୍ନ ବଣପତି—    ରମଣୀକୁ ରେ ଦୁର୍ମତି
ସ୍ୱୈରପଣେ ବନୁ ତୁହି ଆଣିଛୁ ହରି,
ବୁଦ୍ଧି ତୋର ହେଲାଣି ବାମ,
ତେଣୁ ସିନା ଆଚରିଲୁ ଏ ମନ୍ଦ କାମ । ୪ ।

ଶିଂଶପା ବୃକ୍ଷର ଡାଳେ    କପିଏ ଏକାଳେ ଭାଳେ
ଦେଖିଲି ନିଶ୍ଚୟ ମୁହିଁ ଜାନକୀ ସତୀ,
ସଜଳ-ସରୋଜ-ବଦନ    ଘୋର ଚିନ୍ତାରେ ମଗନ
ହୋଇଣ ମଳିନ ଅହା ଦିଶଇ ଅତି,
ଅଟେ ଏ ତ ବିଧିବିଧାନ,
କପାଳ-ଲେଖନ କେ ବା କରିବ ଆନ । ୫ ।

ତ୍ରିଭୁବନର ବନ୍ଦନୀ    ବିଦେହ-ନୃପନନ୍ଦିନୀ
ରୂପଗୁଣବତୀ ଅହା ଶୋଭାର ଖଣି,
ଜଗତ-ସୁଷମା-ସାର    କରି କିବା ଏକାଧାର
ଗଢ଼ିଅଛି ବିଧି ଏହି ବରରମଣୀ ?
ଅସ୍ତାଚଳ ଚୂଳେ କି ରବି ?
ଧନ୍ୟ ଏ ଜନ-ନୟନ-ମୋହନ-ଛବି । ୬ ।

ଶୋଭାର ବିମଳ-ଦ୍ୟୁତି    ଶ୍ରୀପଦୁ ଉଠଇ ଫୁଟି
ନାରୀ ତ ନୁହନ୍ତି ଏହୁ ନିଶ୍ଚୟ ଦେବୀ,
ନ ହେଲେ କି ଘନ-ବନେ    ଆସି ଥାଆନ୍ତେ ମୁଦ-ମନେ
ପତିଙ୍କ ପ୍ରିୟ-ଚରଣ-ପଙ୍କଜ ସେବି,

ପତି-ପଦ ବନ୍ଦି ବିଳାସ,
କଅବା ସମ୍ପଦେ ଭଲେ ନାହିଁ ତ ଆଶ । ୭ ।

ଏହା ଶୁଣି ବୀର ହନୁ   ଓହ୍ଲାଇ ବୃକ୍ଷ-ଆସନୁ
ସୀତାପଦେ ମଥା ଥାପି କହନ୍ତି ଗିର,
"ଶୁଣ ଗୋ ଜାନକୀ ସତୀ   ବିଚିତ୍ର ଘଟଣା ଅତି
ଲଙ୍ଘି ହେଲେ ସୁବିଶାଳ-ବାରିଧି-ନୀର
ଆସିବେ ବାହିନୀ ବହନ,
ପ୍ରଭୁ ହାତେ ନାଶଯିବ ପାପୀ ରାବଣ । ୮ ।

ଗାଢ଼-ଚିନ୍ତାଗତ-ମନେ   ଭ୍ରମୁଥିଲେ ଘନ-ବନେ
କି ଅବା ବର୍ଣ୍ଣିବି ରାମ ହୃଦୟ-ଦୁଃଖ,
ମିଳି ତହିଁ ସୁଗ୍ରୀ ସଙ୍ଗେ,   ମାତି ଘୋର ରଣରଙ୍ଗେ,
ବଧି ବାହୁବଳେ ବାଳୀ-କପିପ୍ରମୁଖ;
ସାକେତ-ଅବନୀ-ମଣ୍ଡନ,
ସୁଗ୍ରୀବଙ୍କ ସଙ୍ଗେ ମୈତ୍ରୀ କଲେ ସ୍ଥାପନ । ୯ ।

ତେଣୁ କୋଟି କୋଟି କପି   ସେହି ସାଧୁ-ରାମ-ତପୀ
ଦୁଃଖ ଦେଖି ହୃଦେ ହୋଇଅଛୁ ଆକୁଳ,
ଏହା ମୋର ଧ୍ରୁବ-ବାଣୀ   ଶୁଣ ଆଗୋ ରାମରାଣୀ
ରାବଣର ବଂଶ ଆଶୁ ହେବ ନିର୍ମୂଳ;
ରଘୁବଂଶ କୀର୍ତ୍ତି-ସୌରଭ,
ଭେଦିବ ସାରା ଅବନୀ ଭେଦିବ ନଭ । ୧୦ ।

ଏଥୁ ଅନ୍ତେ ବୀରମଣି   ସତୀ ପଦ-ପଦ୍ମେ ନମି
ଶ୍ରୀରାମଦତ୍ତ ମୁଦ୍ରିକା ଅର୍ପି ଶ୍ରୀକରେ,

ସୀତା କହନ୍ତି ହୃଦବ୍ୟଥା    ଆଉ ପ୍ରଭୁଙ୍କ ବାରତା
ନିବେଦିଲେ ଗାଢ଼ଭକ୍ତି ପୁଲକଭରେ,
ତୁଟିଲା ମାନସ ସଂଶୟ,
ସତୀମୁକ୍ତି-ପଥ ହେଲା ଉଜ୍ଜ୍ୱଳମୟ ।

କପିମୁଣ୍ଡଁ ସ୍ୱାମୀ କଥା    ଶୁଣି ନତ କରୁ ମଥା
କହନ୍ତି ସ୍ୱଗତେ ଧୀରେ ସତୀ ଜାନକୀ,
ସତେ କି ପଦ-ସୁରତ    ପାଇବ ଜୀବନେ ଲଭ
ହେ ଶରଣବନ୍ଧୁ ତବ ପଦସେବକୀ ?
ଭକ୍ତମଣି କପିପ୍ରବର
ଜଣାଇଲେ ହୃଦୟ-ବେଦନା ସତ୍ୱର ।

ପ୍ରସନ୍ନତାପୂର୍ଣ୍ଣ ମୁଖେ    କହନ୍ତି ଜାନକୀ ସୁଖେ
“ଶୁଣ ଏ ଦୀନା କାହାଣୀ କପି-ପୁଙ୍ଗବ !
ଘୋର ପଞ୍ଚବଟୀ ବନେ    ବସାଇ ପର୍ଣ୍ଣ ସଦନେ
ମୃଗୟାବିନୋଦ ଆଶେ ଗଲେ ରାଘବ,
ପାଶେ ମୋର ଥିଲେ ଲକ୍ଷ୍ମଣ,
ଭ୍ରାତୃ ଭକ୍ତମଣି-ରଘୁକୁଳ-ନନ୍ଦନ ।

ଏକାଳେ “ତ୍ରାହି ଲକ୍ଷ୍ମଣ”    ଡାକ ଶୁଭିଲା ବହନ,
ଡାକ ଶୁଣି ହୃଦେ ଜାତ ହେଲା ବିଷାଦ,
ଭାଳିଲି ବ୍ୟଥିତ-ମନେ    ସତେ କି ସେ ଘୋର ବନେ
ପ୍ରଭୁଙ୍କୁ ଦାରୁଣ ବହି ହେଲା ପ୍ରମାଦ,
ଉଚ୍ଚବାର ଶୁଭିଲା ସ୍ୱନ,
“ଏ ଘୋର ସଙ୍କଟୁ ତ୍ରାହି କର ଲକ୍ଷ୍ମଣ ।”

ମୋହର ତାଡ଼ନା ଗିର          ଶ୍ରବଣେ ଲକ୍ଷ୍ମଣ ବୀର
ସଦର୍ପେ ଧଇଲେ ଧନୁ ଧଇଲେ ଶର,
ଚରଣଘାତେ ଧରଣୀ          କମ୍ପାଇଣ ଭକ୍ତମଣି
ଗମିଲେ କାନନପଥେ ହୋଇ ତତ୍ପର,
ବେନି ଭ୍ରାତ ରହିଲେ ଦୂରେ,
ଏକାକିନୀ ଥିଲି ମୁଁ ସେ ବିଜନ ପୁରେ ।

ଯତିଏ ଭିକ୍ଷୁକବେଶେ          ଉଭା ହୋଇ ଦ୍ୱାରଦେଶେ
କହିଲା ଦିଅ ଗୋ ଭିକ୍ଷା ଏ ଦୀନ ଜନେ,
କ୍ଷୁଧାରେ ମହା ଆତୁର          ହୋଇଣ ଜାଣ ଚତୁର—
ପଣେ ଅସି ଉଭା ହେଲି ତବ ସଦନେ,
କୃପାମୟି ! ହୋଇ ଉଦାର,
ଏ ଘୋର ବିପଦୁଁ ବାରେ କର ଉଦ୍ଧାର ।

ଦୁଷ୍ଟର କରୁଣ ବାଣୀ          ଶୁଣି ହୃଦ ହେଲା ପାଣି
ନିଜ ହାତେ ଆଣି ଭିକ୍ଷା ଦେଲି ବହନ,
ହାତକୁ ମୋର ପ୍ରବଳ          ବିକ୍ରମେ ଧଇଲା ଖଳ
କହିଲି ଅରେ ରେ ଏ କି ମନ୍ଦ କରମ ।
ବଳେ ମତେ ବସାଇ ରଥେ,
ଆରମ୍ଭିଲା ଯାତ୍ରା ତହୁଁ ଗଗନପଥେ ।

ପକ୍ଷୀଏ ଏକାଳେ ତହିଁ          ହୃଦୟେ କରୁଣା ବହି
କହିଲା ଏ କି କରଣୀ ଅରେ ଦୁର୍ମତି,
ମିଥିଳାଧିପ-ନନ୍ଦିନୀ          ବନେ ଦେଖି ଏକାକିନୀ
ହର ନେବାପାଇଁ ଭୁଞ୍ଜ ଚାଳନ୍ତୁ ମତି,

ମଣିଲ୍ବେ ହୋଇ ଅଶାସ୍ତ୍ରୀ
ଭୁଜଙ୍ଗମ-ଶିରେ କର ଅଛୁ ବଢ଼ାଇ ।

ଗୃଧ୍ର ଅନ୍ତେ ପକ୍ଷିବର          ମନେ ହୋଇ ଶ୍ରେଷ୍ଠବର
ପଥ ନ ଛାଡ଼ନ୍ତେ ଦୁଷ୍ଟ ହୋଇ କୁପିତ,
ଖଡ୍ଗାଘାତେ ବେନି ବାହୁ          ଛେଦନ୍ତେ ଉକ୍ତ ଜଟାୟୁ
ପଲକେ ଅବନୀ-ଶେଯେ ହେଲା ପତିତ,
ରଥ ବାହି ନେଲା ସେ ଖଳ,
ହୃଦଗ-ରୁଧିରେ ରଞ୍ଜି ବାହୁଯୁଗଳ ।

ଲଙ୍ଘି ଶତ ଗିରି, ବନ,          ବିସ୍ତୃତ ନୀଳ-ଗଗନ
ଘୋରଘନ-ସ୍ୱନ-ଘୋଷେ ଚଳନ୍ତା ରଥ,
ବନ୍ଧୁ ମଣିମୟ-ହାର          ସ୍ୱକରେ କରି ବାହାର
ନିକ୍ଷେପଣ କଲି ଲକ୍ଷି ଅରଣ୍ୟପଥ,
ଅଙ୍ଗ-ଆଭରଣୁ ସନ୍ଦେଶ
ପାଇ କେଉଁ ପ୍ରତୀକାର କଲେ ବୀରେଶ ?

ଲଙ୍ଘି କୋଶ ଶତ ଶତ          ବିସ୍ତାରିତ ଘନପଥ
ଏ ରମ୍ୟ ନଗରେ ରଥ ରଖିଲା ଆଣି,
ଏ ମନ ନୟନ ଲୋଭା—          ନଗରୀମୁକୁଟ ଶୋଭା
ଦେଖି କପିଶ୍ରେଷ୍ଠ ! ହେଲେ ପାରିଲି ଜାଣି;
ନିଶ୍ଚୟ ନୁହଇ ସେ ଯତି,
ବିଶ୍ରବା ତନୟ ଲଙ୍କେଶ୍ୱର-ଦୁର୍ମତି ।

(ଶ୍ରୀରକାନ୍ଦ ରହୁଗଣ          କାନ୍ତ କରି ବଢରଣ
ଏ ରମ୍ୟ ନଗରେ କିବା ହୋଇଛି ଠୁଳ ?

ଠାବେ ଠାବେ ଶୁଭ୍ର ବାସ          ଚୁମ୍ବି ସୁନୀଳ ଆକାଶ
ରଜତ ପର୍ବତ ସମ ଦିଶେ ମଞ୍ଜୁଳ ।
ନଗରୀ ଚୌଦିଗେ ପ୍ରାଚୀର,
ତୋଳିଛନ୍ତି ଅଭ୍ରଭେଦୀ ଶିର ରୁଚିର ।

ତ୍ରିପୁରବିଜୟୀ ବୀର          ଅଟେ ଏହୁ ଦଶଶିର
ପୁର ତାର ପୂର୍ଣ୍ଣ ବହୁବିଧ ସମ୍ପଦେ.
ଇନ୍ଦ୍ର ଆଦି ଦେବଗଣ          ସଭୟେ ହୋଇ କମ୍ପନ
ଖଟନ୍ତି ଯାର ଗୌରବ-ସେବିତ-ପଦେ,
ବଡ଼ ଭାଗ୍ୟବାନ ବୀରବର,
ଜନେ ଧର୍ମରାଜ ଯାର କୃପାଭିକାର ।

ଇନ୍ଦ୍ରଜିତ, କୁମ୍ଭକର୍ଣ୍ଣ          ଆଦି କେତେ ବୀରଗଣ
ଅନନ୍ତ-ବିଶ୍ୱବିଜୟୀ-ଶୂର ଅଟନ୍ତି ।
ସେ ପଦପଙ୍କଜ-ସେବା          କୁ ବା ଛ ଉପମା ଦେବା
ଜନେ ବେଦପାଠ ସଦା ଯହିଁ ଖଟନ୍ତି,
ମନ୍ଦୋଦରୀ ଆଦି ରମଣୀ
ଲକ୍ଷ ଲକ୍ଷ ଚରୁଛନ୍ତି ସେ ଲଙ୍କମଣି ।

ରମଣୀ' ପ୍ରଣୟାସକ୍ତ,          ଚିର-ସୁରା-ପାନ-ମତ୍ତ
ବଶ-ଅନୁଗତ ତାର ଅଟେ ସ୍ୱଭାବ,
ମୋ ରୂପଯୌବନେ ମୁଗ୍ଧ          ହୋଇଣ ସେ ଖଳ ଲୁବ୍ଧ—
ମାନସେ ଆଣିଲା ହୃଦେ ବହୁ ଦୁର୍ଭାବ ।
ଶୋଭାମୟ ଅଶୋକବନେ
ଜଗାଇ ରଖିଛୁ ପୁଣି ଅତି ଯତନେ । ୨

ଘୋର-ବିକଟବଦନା          ସ୍ୱଭାବେ ଦୁରନ୍ତ-ମନା
କିନ୍ନରୀଏ ଚଉପାଶେ ଅଛନ୍ତି ଘେରି,
ବିଂଶପାଣି ଗୁଣ, ଗୀତ          କୀର୍ତ୍ତନ କରନ୍ତି ନିତି
ମହାଶଙ୍କା ପ୍ରାଣେ ମୋର ଉପୁଜେ ହେରି,
ମାସ ବେନି ଦେଇଛି କଣ୍ଟ,
କଣ୍ଟ ଅନ୍ତେ ପ୍ରାଣେ ମୋତେ ମାରିବ ଖଣ୍ଡ ।

ଉତ୍ତର ହେବ ବହୁତ          ଶୁଣ ଅହେ ବାତସୁତ
ଏ ବୃଥା କଥନେ ଅବା କି ପ୍ରୟୋଜନ,
ଶୀଘ୍ର ଫେର ମାଲ୍ୟବନ୍ତ          ଜଣାଅ ମୋର ଉଦନ୍ତ
ଦୂର୍ବାଦଳ-ଶ୍ୟାମଳ ସେ କଞ୍ଜଲୋଚନ,
କହିଥିବ ନ ଯିବେ ଭୁଲି,
ଏ ରଘୁବଂଶିକ-ପ୍ରିୟ-ନେତ୍ରପିତୁଳୀ ।

ଅବିଳମ୍ବେ କପିବର          କହିବ ଶୁଣ ଆବର
ସୈନ୍ୟଗଣ ସଙ୍ଗେ ଲଙ୍ଘି ବାରିଧିଜଳ,
ବହୁ ସଂଗ୍ରାମ ତୁମୁଳ          ରାବଣବଂଶ ନିର୍ମୂଳ
କରିବେ ସେ ରଘୁକୁଳ-ରବି-ଉଜ୍ଜ୍ୱଳ,
ତ୍ରିଭୁବନେ ରହିବ ଯଶ,
ଧର୍ମପକ୍ଷ ରଣେ ଜୟୀ ହୁଏ ଅବଶ୍ୟ ।

ଆସିବ ଦିନେ ସମସ୍ତ          ରକ୍ଷକୁଳ ଦର୍ପଧ୍ୱସ୍ତ
ଧର୍ମର ପ୍ରଭାବଫଳେ କ୍ରମେ ଭାଙ୍ଗିବ,
ଜନମୁଖେ ହାହାକାର          ଉପୁଜାଇ ଦୁର୍ନିବାର
ତ୍ରିବାର ସତ୍ୟ ଏ ଜାଣ ଦିନେ ଉଠିବ,

ଛଣି ଅଭ୍ରଭେଦୀ ଶାଳକା
ଜାନକୀହରଣ-ପାପ-ପାବକଶିଖା ।"

ସୀତାଙ୍କ କାର୍ପଣ୍ୟ ଗିର ଶୁଣି ସେହୁ କପିବୀର
ଆଶ୍ୱାସନା ବାକ୍ୟ ଭାଷି ମନ ତୋଷିଲେ,
ଶ୍ରୀଚରଣକଞ୍ଜେ ଲୋଟି ପ୍ରଣମିଣ ବାର କୋଟି
"ନଜର ସଙ୍କେତ ହଥ" ବୋଲି କହିଲେ,
ଦେଲେ ଶିରୁ ସେ ମଥାମଣି,
ଜନକନନ୍ଦନୀ ବଣ୍ଡ-ସୁଷମାଖଣି ।

ଏଥିଅନ୍ତେ କପିବର ବାନର ସ୍ୱଭାବଭର
ହୋଇ ଯାହା କଲେ ଶୁଣ ହେ ବିଜ୍ଞଜନେ !
ଥିଲା ତହିଁ କୋଟି କୋଟି ବୃକ୍ଷ ଯାହା ଚୋଟି ଗୋଟି
ଉପାଡ଼ିଲେ ପୁଷ୍ପରତ୍ନ ଦର୍ପିତ ମନେ,
ଛାଡ଼ି ଦେଲେ ଏକଇ ମାତ୍ର
ସୀତା ସତୀ ଛାୟାଦାନୀ ଯେ ତରୁଗାତ୍ର ।

ବନେ ବୃକ୍ଷ ଉତ୍ପାଟନ କାଣ୍ଡ ଦେଖି ରକ୍ଷୀଗଣ
ଯୁଗ୍ମକରେ ଦଶଶିର ପାଶେ ଗମିଲେ ।
"ଜୟ ରକ୍ଷକୁଳେଶ୍ୱର ପ୍ରବଳ ପ୍ରତାପୀ ବର"
ବୋଲିଣ ଶ୍ରୀପଦକଞ୍ଜ-ତଳେ ନମିଲେ,
ଦେଲେ ବନ ମନ୍ଦ-ବାରତା,
ପୂଜ ବୃଷ୍ଟାରଡବାନ୍ଧୁ ଲଙ୍କ କରତା ।

ଶୁଣି ରକ୍ଷୀଙ୍କ ବଚନ ବଣଭା ଋଷିନନ୍ଦନ
ଅକଳତ ସୈନ୍ୟଗଣେ ପାଶେ ଖାଇଲା,

"ଉପବନଧ୍ୱଂସକାରୀ          ଅସିଛୁ ଯେ ଦୁଷ୍ଟଚାରୀ
କପିକୁ ଜୀବନେ ଆଣ" ବୋଲି କହିଲେ ।
ସୈନ୍ୟଗଣ କଲେ ଗମନ,
କପି ହନୁଙ୍କ ନିଧନ ଆଶେ ବନ୍ଧନ ।

ସ୍ୱର୍ଣ୍ଣକାନ୍ତ କଳେବର          ଦେଖି ବାନରନିକର
ନିଜ ନିଜ ଇଷ୍ଟଦେବ ହୃଦେ ସ୍ମରିଲେ,
ରାଜଆଜ୍ଞା ପାଳନୀୟ          ବୋଲିଣ ଅକଥନୀୟ—
ବେଗେ ଯାଇ କପି ଚଉପାଶେ ଘେରିଲେ,
ହର୍ଯ୍ୟକ୍ଷ ରୌଦ୍ରବେଗେ ଗୋମାୟୁ
ଧାବିତ କି ଅବା ପ୍ରାଣେ ନଗଣି ଆୟୁ ?

ଏ ଅନ୍ତେ ବାତକୁମର          ହୃଦେ ହୋଇ କ୍ରୋଧଭର
ଲୌହସ୍ତମ୍ଭ ଭାଙ୍ଗି ଏକ ହସ୍ତେ ଧଇଲେ,
"ରକ୍ଷକୁଳର ବିନାଶ          କାଳ ପାଇଲା ପ୍ରକାଶ
ତେଣୁ କି ଆସିଲ ଏଥି" ବୋଲି କହିଲେ,
ସର୍ବେ ରତ ହେଲେ ସମରେ,
ରଣ-ରଙ୍ଗ-ଭୂମି-ଶାୟୀ ହେଲେ ଅପୁରେ,

ତହୁଁ ପଞ୍ଚ ସେନାପତି          ଆସି ମିଳିଲେ ଝଟତି
ହନୁବୀର ପାଶେ ସେହି ଅଶୋକବନେ,
ସପ୍ତ ମନ୍ତ୍ରିସୁତଗଣ          ତା ପରେ କଲେ ଗମନ
ହନୁ ପାଡ଼ିବାକୁ ମାଡ଼ି ରଣ ଅଙ୍ଗନେ,
ସଭଙ୍କର ଛିଡ଼ିଲା ମଥା,
କେହି ନ ରହିଲେ ଆଣିବାକୁ ବାରତା ।

ଏଥିଅନ୍ତେ ଲଙ୍କସାଇଁ ପାଶେ ଅକ୍ଷମୃତ ଶୁଣି
କପିକୁ ଜୀବନ୍ତେ ଆଣ ଦେଲା ଆଦେଶ,
ଅକଳନ ସୈନ୍ୟ ସଙ୍ଗେ ଗମିଲା ସେ ରଣରଙ୍ଗେ
ସଙ୍ଗ୍ରାମରେ ରଣେ ମାତ୍ର ହେଲେ ନିଃଶେଷ,
ପାଇ ପୁତ୍ରମୃତ୍ୟୁବାରତା,
ଜୀବନ୍ମୃତ ପ୍ରାୟ ହେଲା ଲଙ୍କାକରତା ।

ଗଣି ଭବିଷ୍ୟ ପ୍ରମାଦ ଡକାଇଲା ମେଘନାଦ
ନାମେ ପୁତ୍ର ମହା ବିଚକ୍ଷଣ ସମରେ,
କହିଲା, "ଅରେ କୁମର ଆଣ ସେ ଖର୍ବ ବାନର
ପୁତ୍ରମୃତ୍ୟୁଶୋକ-ଦଗ୍ଧ ମୋର ବକ୍ଷରେ
ଖେଳଯିବ ପୀୟୂଷଲହରୀ,
ଆଣିଲେ ସେ କପି ଆଜ୍ଞା ପାଳନ କରି ।"

ପିତୃବର ଲଙ୍କସାଇଁ ମୁଖୁଁ ଏ ଆଦେଶ ପାଇ
ଶୀରକେଶେ ଶୀରକର ବାରେ ପରଶି,
"ନଷ୍ଟେ ତାରେ ଆଣିବଇଁ ବୋଲିଣ ସଦର୍ପେ କହି
ହନୂପାଶେ ମେଘନାଦ ଗଲା ଧରଷି,
ଯାହା ଯାର ବ୍ରହ୍ମାଣ୍ଡପତି,
ସେ କି ତ୍ରସ୍ତ ହେବେ ଦେଖି କ୍ଷୁଦ୍ର ବିପତ୍ତି ?

ବୃକ୍ଷ ପରେ ବୃକ୍ଷ ଭାଙ୍ଗି ଫିଙ୍ଗିଲେକ ହନୂ ରାଗି
ଅଙ୍ଗେ ବାଜି ଚୂର୍ଣ୍ଣ ହେଲା ବୃକ୍ଷନିକର,
ବୃଷ୍ଟି ମେଘାକାରେ ତହିଁ ରଥୁ ଶୂନ୍ୟେ ଗରଜଇ
'ଅରେ କ୍ଷୁଦ୍ର କପି' ବୋଲି ଦୈତ୍ୟକୁମର ।

ରଣରଙ୍ଗୀ ସେ ହନୂବୀର
ହାସ୍ୟାସ୍ପଦ ବାକ୍ୟ ଶୁଣି ହେଲେ ଅସ୍ଥିର ।

ଏଥଅନ୍ତେ ବୀର ହନୁ    ବିସ୍ତାରିତ କଲେ ତନୁ
ବେଗେ ବୀର ଅଙ୍ଗଘାତେ ଘୋର ଛମିର
ଯୋଦ୍ଧାଙ୍କୁ ସେ ଧ୍ୱସ୍ତ କଲେ,    ବିଜୟ ଇପ୍ସିତ ମନେ
ରଣାଙ୍ଗନେ ରତ ହେଲେ ଉଭୟ ବୀର,
ବାହୁ ପରେ ବାହୁ ପରଣି,
ଗିରିଶୃଙ୍ଗେ ଗିରି କି ବା ପଡ଼ଇ ଖସି ।

ପରଶେଷେ ବ୍ରହ୍ମାସ୍ତ୍ରେ    ବାନ୍ଧିଲା ରକ୍ଷ ପ୍ରତାପେ
ହନୂମାରେ କେବଣ ବା କରିଲା ବନ୍ଦୀ,
ଇପ୍ସିତ କେଉଁ କାରଣ    ଯୋଗୁଁ କି ବାତନନ୍ଦନ
ବ୍ରହ୍ମଶାପରୂପୀ ଛନ୍ଦେ ହେଲେକ ଛନ୍ଦ,
ଏ କଥା ତ ନଗଲା ଜଣା,
ଈଶ୍ୱର ବିଧାନ ନରେ ସବୁ ଅଜଣା ।

ବିଜୟ-ଉଲ୍ଲାସଭର    ହୋଇ ଇନ୍ଦ୍ରଦର୍ପହର
ପିତୃପାଶେ ବଦ୍ଧ-କପି ନେଲା ବହନ,
ସର୍ବ ଲଙ୍କା ଅଧିବାସୀ    ମିଳିଲେ ସେଠାରେ ଆସି
ଶତମୁଖେ ମେଘନାଦ ହୋଇଲା ଧନ୍ୟ,
ଦେଖି ହନୂ ସ୍ଥିର-ମୂରତି,
ଆକ୍ଷେପି କହିଲା କ୍ରୋଧେ ସେ ଲଙ୍କାପତି ।

"ଧିକ ତୋ ମନ ସାହସ    ତୋର ପିତା ମୋର ଦାସ
ଦାସପୁତ୍ର ହୋଇ ପ୍ରଭୁଦ୍ରୋହ ଆଚରୁ

କପି-ପତଙ୍ଗମ ହୋଇ          ଦର୍ପପୂର୍ଣ୍ଣ ହୃଦେ ଭୁଞ୍ଜ
ଅଗ୍ନେୟେ ଶଇଳଶିଖେ କିପାଁ ସହରୁ ?
ଲଙ୍କେଶ୍ୱର ବାହୁ-ବିକ୍ରମ
ନ ଜାଣୁ କି ଅରେ ମୂଢ଼ କପି ଅଧମ ?"

ଏଥିଅନ୍ତେ ଲଙ୍କବର          କ୍ରୋଧେ ହୋଇ ଥରହର
ଖଡ୍ଗ ତୋଳ କପି ପାଶେ ଗଲା ଧରସି,
ଦନୁଜ-କୁଳ-ଭୂଷଣ          ପାଶେ ଥିଲେ ବିଭୀଷଣ
ଦୂତ ଅବଧ ବୋଲିଣ ଧଇଲେ ଅସି ।
ମାରୁତ ଭାଷିଲେ ଭାରତୀ -
ଦୈତ୍ୟକୁଳାଧମ ! ମୂଢ଼ ରେ ହୀନମତି !

ହେଣ ବ୍ରହ୍ମାଣ୍ଡର ସାଇଁ          ଅଚିନ୍ତ୍ୟ ରାମ ଗୋସାଇଁ
ତାଙ୍କର ଘରଣୀ ତୁହି କରିଛୁ ଚୋରି,
ପ୍ରଭୁଙ୍କ ଆଦେଶ ଥିଲେ          ଦେଖନ୍ତୁ ରେ ଖଳ ହେଲେ
ଜୀବର ଅନ୍ତିମ ଦଶା ଶମନପୁରୀ ।
ମୁନିବ ଆଦେଶ ବ୍ୟତୀତ
ଦାସପକ୍ଷେ ଶତ୍ରୁହତ୍ୟା ନୁହେ ଉଚିତ ।"

ହନୁଙ୍କ ବଚନ ଶୁଣି          କୋଟି କୋଟି ରକ୍ଷ ପୁଣି
ସେ ମହା ଲଙ୍କନଗରେ ଯାବତ ଥିଲେ,
ବଡ଼ ନଷ୍ଟ ଏ ମର୍କଟ          ବୋଲି ଭାଷି କଟ କଟ
କପି ଚଉପାଶେ ଆସି କୋପେ ବେଢ଼ିଲେ,
ହନୁ ଲାଙ୍ଗୁ ଦହନକାର୍ଯ୍ୟ,
ଶୀଘ୍ର କହିବାକୁ ତହିଁ ହୋଇଲା ଧାର୍ଯ୍ୟ ।

ତହୁଁ ଦନୁଜ ନିକର  କ୍ରୋଧେ ହୋଇ ଜରଜର
ପର୍ବତ ଆକାରେ ବସ୍ତ୍ରରାଶି ଜାହ୍ନିଲେ,
ତୈଳସିକ୍ତ ସୁବସନ  ଲାଙ୍ଗୁଳେ ବାନ୍ଧିଣ ବନ୍ଧନ
ସେ ଦୁର୍ବ୍ୱତ୍ତ କର୍ମ୍ମେ କୃତକାର୍ଯ୍ୟ ନୋହିଲେ,
ସ୍ତୂପ ପରେ ସ୍ତୂପ ସରିଲା,
ହେଲେହେଁ ସେ ବସ୍ତ୍ର ଗଡ଼ା ପୂର୍ଣ୍ଣ ନୋହିଲା ।

ହନୁଲାଙ୍ଗୁଳେ ମହାବହ୍ନି  ସଂଯୋଜନ୍ତେ ବୀରମଣି
ତନୁ ସଙ୍କୁଚିତ କରି ପାଶୁ ଫିଟିଲେ,
ସବୁରଙ୍କ ହୃଦେ କମ୍ପ  ଜନମାଇଁ ଦେଇ ଲମ୍ଫ
ପ୍ରାସାଦୁଁ ପ୍ରାସାଦଚୂଳେ ଯାଇ ଉଠିଲେ,
ସାଗରେ ବାଡ଼ବାଗ୍ନି ସମ
ଅନଳେ ସେ ଲଙ୍କାପୁରୀ ହେଲା ବିଷମ ।

କାହିଁ ସ୍ୱର୍ଣ୍ଣ, ସୁରଜତ—  ଗିରିବର ବ୍ରାତବତ
ତୁଙ୍ଗ ସୌଧାବଳି ଅହା ଉଠଇ ଜଳି,
ବୈଚିତ୍ର୍ୟ ତରଳ ପ୍ରବାହେ  ଡକାପାରୁ ଆଃ, ଏଃ, ଆଃ, ଏଃ
ଦୀପାଗ୍ରେ ପତଙ୍ଗବତ ପଡ଼ନ୍ତି ଛଳି,
ସ୍ୱର୍ଣ୍ଣମୟୀ ଲଙ୍କାଭୁବନ,
ବିଭୀଷଣ ବାସ ଛଡ଼ି ହେଲା ଉଜ୍ଜଳ ॥

ପୁଣ୍ୟମୟ ସୁଶୀତଳ  ଗମ୍ଭୀର ସାଗରଜଳ
ଗରଭେ ସେ ବୀର ସାରି ଅବଗାହନ,
ହାସ୍ୟଯୁକ୍ତ ସୁବଦନେ  ମଞ୍ଜୁଳ ଅଶୋକ ବନେ
ସୀତା ଦେବୀ ଅଗ୍ରେ ଉଭା ହେଲେ ବହନ,

କହିଲେ, "ଗୋ ସାଧ୍ୱୀମଣ୍ଡନା,
ପଞ୍ଚବରଦିବସାଦେ ନୁହ ବିମନା ।"

"ପ୍ରଭୁଭାନୁବଂଶୋଦ୍ଭବ    କ୍ଷତ୍ରିୟବଂଶଗୌରବ
ଅଟନ୍ତି ଗୋ ସତ୍ୟସନ୍ଧ ବୀର ରାଘବ,
କପି ରଣାଙ୍ଗ ଅପାର    ସଙ୍ଗେ ଲଙ୍ଘି ପାରାବାର
କରିବେ ଏ ଦଶଶିର ସଙ୍ଗେ ଆହବ,
ଦାସଜନେ ଦିଅ ମେଲାଣି"
"ଶୁଭେ ଫେର" ଦେଲେ ଆଜ୍ଞା ସେ ରାମରାଣୀ ।

ସତୀ ପାଦତଳେ ଲୋଟି    ତୁଙ୍ଗ ନଭପଥେ ଉଠି
ପବନ-ପ୍ରଖର-ଗତି ଯୋଗେ ପାବନି
ସଙ୍କଟମଧ୍ୟ ସରଣୀ    ସ୍ୱୀୟ ବଳେ ଅତିକ୍ରମି
ପ୍ରଭୁ ପାଦପଦ୍ମତଳେ କହିଲେ ନମି ।
"ଜନକ-ନୃପତି-ନନ୍ଦିନୀ
ହୋଇଛନ୍ତି ଦଶଶିର ପୁରେ ବନ୍ଦିନୀ ।"

ହନୁଙ୍କ ବଚନ ଶୁଣି    କାନ୍ତାଗୁଣଗଣ ଗୁଣି
କହନ୍ତି ରାଘବ "ଶୁଣ ହେ କପିମଣି,
ଧନ୍ୟ ତବ ତାତ, ମାତ    ଯେ ତୁମ୍ଭଙ୍କୁ କଲେ ଜାତ
ତୁମ୍ଭେ ଦାଶରଥି-ଭକ୍ତଗଣ ଅଗ୍ରଣୀ,
ଦୁଃଖ-ଘନ-କଣ୍ଟକ ବନେ,
ଅଶୋକ-ପାଦପରୂପୀ ତୁମ୍ଭେ ହେ ଜଣେ ।"

ହନୁମୁଖୁଁ ସୁଧା ଗିର    ଶୁଣିଥିଲେ ଯେତେ ବୀର
ମନ୍ତ୍ରଧ୍ୱନି ଯୋଗେ ତାର ଅମ୍ବରବକ୍ଷ,

ହୋଇ ଦର୍ପାନ୍ୱିତ-ମତ    ହଗନ୍ତେ ଗର୍ଜି ଫେରନ୍ତି
ଉତ୍କ୍ରୋଶର କାଳେ ଯଥା ହୁଏ ହର୍ଯକ୍ଷ,
ରଚ ଲଙ୍କାଯାତ୍ରା ସଙ୍କଳ୍ପ,
ସାଜିଲେ ସକଳେ ମହା-ରଣ-ଅକଳ୍ପ ।

ଘୋର-ସଙ୍କଟ-ଅପାର-    ପୂର୍ଣ୍ଣ-ଭବ-ପାରାବାର-
ଜଳେ ଶ୍ରୀରାମଚନ୍ଦ୍ର ଯେହ୍ନେ ଜୀବନ-ନାବ,
ଯାଙ୍କ ଅଙ୍ଗ, ସର୍ବେ ଜାତ    ତାହାଙ୍କ, ବା କି ଅଜ୍ଞାତ
ସେହି ରାମେ ଲୋଡ଼ା ଅବା କେବଣ ଠାବ ?
ମହାମାୟ ମହିମା ଯାର,
ସେ ଲୀଳା ବା କି ବୁଝିବ ମାନବ ଛାର ?

“ମୁନି-ମାନସ-ରଞ୍ଜନ,    ଭବ ବିଷାଦ-ଭଞ୍ଜନ,
ଜାନକୀପତି-ସୁନ୍ଦର ଜୟ ବୀରବର,
ଜୟ ଜୟ ରଘୁରାମ,    ଦୂର୍ବାଦଳ-ଘନଶ୍ୟାମ
ପ୍ରିୟ ଭକ୍ତଜନ-ହୃଦ-ବନବିହାରୀ,
ଦୟାମୟ ହେ ମହାବାହୁ,
ସେ ପଦସେବାରେ ମୋର ଜୀବନ ଯାଉ ।”



## ପୋତାଗଡ଼



( ରାଗ—ନଟବାଣୀ—

ସମୟ—ବେଲବୁଡ଼ )

ଗଞ୍ଜାମର ଇତିହାସ ଲୀଳାସ୍ଥାନ
ପୋତାଗଡ଼ ଏ ଯେ ଅଗ୍ରେ ବିଦ୍ୟମାନ ।

ଦକ୍ଷିଣୁ ବଙ୍ଗୋପସାଗର ସମୀର
ପଥେ ଲଙ୍ଘି ଋଷିକୁଲ୍ୟା-ବକ୍ଷନୀର,

ଗଡ଼ କୋଳେ ମୃଦୁ-ଧାରେ ଧାଏ ବହି,
ବିସ ଥିର ଶତ କଥା କାନେ କହି ।

ବଟ ତରୁଶାଖେ ବସିଣ ବାୟସେ
କଣ୍ଠଧ୍ୱନିଧାରା ଢାଳନ୍ତି ହରଷେ ।

ସେହି ରବ ସଙ୍ଗେ ବିବିଧ ବିହଙ୍ଗ—
ନିବହର ମୃଦୁ ନିଃସ୍ୱନ-ତରଙ୍ଗ
ମିଶି ସୁମଧୁରେ ବାଜେ କର୍ଣ୍ଣ-ପଟେ,
ଋଷିକୁଲ୍ୟା ନଦୀ ଶାନ୍ତମୟ-ତଟେ ।

ଉତ୍ତରେ ଗଗନଚୁମ୍ବୀ ଗିରିଚୂଳେ
ନୀଡ଼ମୁଖଗାମୀ ବିହଙ୍ଗମକୁଳେ
ଯାଉଛନ୍ତି ଉଡ଼ି ଗାଇ ଶତ ଗୀତ,
ତା ଶୁଣି ହୃଦୟେ ଜନମଇ ପ୍ରୀତ ।

ଗଡ଼ ଚଉଦିଗେ ଶୋଭିତ ଜଳକା,
ବିଦେଶୀ ବନ୍ଧୁଙ୍କ ପ୍ରାଣ ହଣା ହକା
ଲାଗିଥିଲା ଯହିଁ, ଦିନେ ଏ ଦେଶର
ଧନେ ଆଶା ପଡ଼ି ଆଶାୟୀଜନକର
ସ୍ୱାର୍ଥ ଅନ୍ଧ ଭାବେ ଆସିଥିଲେ ଧାଇଁ,
ଉତ୍କଳର ସ୍ୱତ୍ୱ ହସ୍ତ ନେବା ପାଇଁ ।
କ୍ରମେ ସୌଭାଗ୍ୟର ଗୌରବ-ତପନ
ଅସ୍ତନଭଗର୍ଭେ ହେବାରୁ ପତନ
ତୁଟିଲା ଏହାଙ୍କ ସମ୍ପଦଲାଲସା,
ରାଜ୍ୟଶାସନର ବିଚଣ୍ଡ ଭରସା ।
ପରିଖାର ପ୍ରାଚୀ ଦିଗ ଆର ପାରେ
ଚଳନ୍ତ, ବିମୁକ୍ତ ଚକ୍ଷୁର ଆକାରେ
ବଙ୍ଗ ସିନ୍ଧୁଫେନ-ରଜତ-ତୁରଙ୍ଗ
ସଙ୍ଘର୍ଷଣଛଳେ ବିରଚି ଭ୍ରୂଭଙ୍ଗ
ଠାରୁ କି ଦେଖାଏ ପରପନ୍ଥୀ ଜନେ,
ପୋତାଗଡ଼ର ଏ ବୈଚିତ୍ର୍ୟ ବିଜନେ ?
ବିଚିତ୍ରମୟ ଏ ଗଡ଼ର ଘଟଣା,
ସ୍ୱାର୍ଥ ଅଶେ ଲୋକେ ହୋଇ ମଗ୍ନ, ହଣା
କେଉଁ କୀର୍ତ୍ତି ଅବା ରଖିଲେ ଭବରେ ?
ପୋତାଗଡ଼ର ଏ ପ୍ରଶସ୍ତ ବକ୍ଷରେ
ମାଟି, ଧୂଳି ସଙ୍ଗେ ମିଶିଲା ଶରୀର,
ଯୁଗେ ଯୁଗେ ସିନା ରହିଲା ଏ ଗିର ?
କିନ୍ତୁ କି ରହିଲା ଗୌରବ-ଗୁମାନ ?
କି ରହିଲା ଦର୍ପ, ବୀରତ୍ୱର ଠାଣ ?

ମାତ୍ର ସଙ୍ଗେ ନରମାଂସ ହେଲା ବୋଳା,
ମାତ୍ର ସଙ୍ଗେ ରକ୍ତତରଙ୍ଗର ଦୋଳା
ବଜ୍ର ଗୁରୁସ୍ୱନେ ଉଠିଲା ଗରଜ,
ଝଙ୍କାର ଏ ମହାସମ୍ପଦ ଅରଜ
କାଳ ଏକମାତ୍ର ହୋଇଲା ଧନକ,
ଗର୍ଭେ ଭର ବୀର, ଶାସକ, ବଣିକ ।
ଅଦୂର ଉତ୍ତରେ ତାଳଦ୍ରୁମାବଳ
ସମୀର ପରଶେ ହରଷେ ଦୋହଲ,
ଫିଙ୍ଗାଇ ପତର-ଫାଙ୍କ-ବଙ୍କା-ଆଖି,
ଘନ-କୃଷ୍ଣ-ଅଙ୍ଗେ ସାନ୍ଧ୍ୟ ରାଗ ମାଖି,
ଦେଖୁଛନ୍ତି ଗଡ଼ ମାଧୁରୀ ଅଦ୍ଭୁତ
ନଶ୍ୱରମାନବଆଶା -ଦୁଃସମ୍ଭୂତ ।
ଅସ୍ତରାଗବୋଳା ପଶ୍ଚିମ ଗଗନ
ନେତ୍ରବିମୋହନ କୁଙ୍କୁମ-ବରଣ—
ବକ୍ଷଭେଦୀ-ତୁଙ୍ଗ-ଭୂଧର-ଉରସେ
ବିହଙ୍ଗମକୁଳ ବିହରି ହରଷେ
ପକ୍ଷ ସଞ୍ଚାଳନେ ଗଡ଼ୁକୁ ଉପେକ୍ଷି,
ଯାଉଛନ୍ତି ଆନ ଦିଗକୁ ଲକ୍ଷରେଖି ।
ମାତ୍ର କେବେ କେବେ ତହୁଁ ଦଳେ ଦଳେ
ଆସି ବସୁଛନ୍ତି ଗଡ଼ ବକ୍ଷସ୍ଥଳେ ।
ସ୍ୱନେ ସେହି ସ୍ଥାନ କରି ମୁଖରିତ
ଭୁଙ୍ଗ ନଭପଥେ ହୁଅନ୍ତି ଉଡ୍ଡିତ ।
ବାରବାଟୀଗଡ଼ା ଦୁର୍ଗ ଏ ପ୍ରଶସ୍ତ,
କାଳଯୋଗେ ଆଜ ହେଲା ଅସ୍ତବ୍ୟସ୍ତ ।

ଶତ ଶତ ବର୍ଷ ଗଲାଣି ତ ବିତି,
ଜୀର୍ଣ୍ଣ-ସ୍ତୂପ ପ୍ରାଚୀର ସଙ୍ଗେ ଶକ୍ତ ଭିତ୍ତି
ଉଚ୍ଚ ରହି କହେ ହୋଇ ଅଗଭର,
କର୍ମସୁଦକ୍ଷତା ପ୍ରାଚୀନ ଯୁଗର ।

ଶମ୍ବର-ଭୂତଳ-ଆବାସ-ଗର୍ବକ
ହୋଇ ପୋଡାଗଡ଼ ନାମକୁ ସାର୍ଥକ
କରୁଛି ଏ ଦୁର୍ଗ, ମାନବ ଅଗମ୍ୟ
ତଳବନ୍ୟେ ରାଜେ ପୁର ଅଗଣନ ।

ତମୋପୁଞ୍ଜ ତହିଁ ହୋଇବାରୁ ଠୂଳ
ଦ୍ୱିପଦଣ୍ଡ ମାତ୍ର ଅଗଲୁକକୁଳ
ଗମି ଫେରୁଥାନ୍ତି ବିଫଳ-ମାନସେ,
ପଥଭ୍ରାନ୍ତ ହୋଇ ଜବଡ଼ ଡାମସେ ।

ଶ୍ରମୀ ଓଡ଼ିଆର ବହୁଶ୍ରମାର୍ଜିତ
କେତେ ସ୍ୱର୍ଣ୍ଣ, ରୌପ୍ୟ, ମଣି, ରତ୍ନ, ବିତ୍ତ
ନ ଥିବ ଏ ଗଡ଼ ଦୁର୍ଗୂଢ଼ ଅନ୍ଧାରେ ?
ସେ କଥା ଭାବିଲେ ଘନ-ଅଶ୍ରୁ-ଧାରେ
ଛଳଛଳ ହୋଇ ଉଠଇ ନୟନ,
ଭାଲେ ଲେଖା ଥିଲା ଏ ମନ୍ଦ କରମ !

ପଶ୍ଚିମ ଭୂଧରଚୂଡ଼ା ଦିନମଣି
ଖସି ଏବେ ଦେଇଛଲେଣି ଏ ଧରଣୀ,
ବ୍ୟୋମବକ୍ଷେ ଫିଙ୍ଗି ଛଟା, ତାରା ଧାଡ଼ି
ଅବନୀ କୋଳକୁ ରାତ୍ରିଦେବୀ ମାଡ଼ି
ଆସିଲେଣି ବେଗ କରୁ ତମୋମୟ,
ହୋଇଲାଣି ଗୃହ ଫେରନ୍ତା ସମୟ ।

## ପ୍ରଭାତ

ନୀରବ ନିଶାନ୍ତ-ନୀଳ-ଆକାଶର କୋଳ
କାନନ ଭୂଧର ତରୁ ପଲ୍ଲବ ଗହଳ
ତରୁଦଳୁ ଝରି ଝରି ଶୋଭା ଆସେ ଭାସି,
ସେ ଦୃଶ୍ୟ ଦର୍ଶନେ ମୁଗ୍ଧ ଭାବୁକ ଅନ୍ତର ।
ସୁଦୂର ପ୍ରାନ୍ତରେ ଏ କି ଶୋଭେ କୁହେଳିକା ?
ଆଚ୍ଛାଦି କେଦାର, ବନ, ପାଦପପଟଳ
ତଟିନୀ ପ୍ଲାବନେ ଯଥା ଗହନ-କାନ୍ତାର ?
ଠାବେ ଠାବେ ରକ୍ତରବି-ଦୀପ୍ତ-ମେଘମାଳ
ଛୁଟିଛି କି ରଙ୍ଗେ ଭେଦି ପ୍ରଶାନ୍ତ ଗଗନ ?
ସୌନ୍ଦର୍ଯ୍ୟଶାଳିନୀ ସାନ୍ଧ୍ୟ ଦୀପମାଳା କି ସେ
ପ୍ରଦୋଷକାଳୀନ ଗୃହ-ଅଙ୍ଗନ-ତାମଧ୍ୟେ ?
ସମୀର-ଚଞ୍ଚଳ-ନୀଳ-ସରୋବର-କୋଳେ
ତରୁଣ ରବିର ନବ-ଅରୁଣ-କିରଣେ
କି ରଙ୍ଗେ ବିକଶି ଉଠେ ନଳିନୀସୁନ୍ଦରୀ
ହୃଦୟକାନନେ ଯେସନେ ଭକ୍ତି-ପାରିଜାତ
ବିଲସେ ବିଶୁଦ୍ଧ-କଳ୍ପ-ସମୀର-ପରଶେ ?
ଫୁଲ୍ଲ ମଧୁ ଗନ୍ଧବହ-ମନ୍ଦ ସମୀରଣ
ଆନନ୍ଦ-ଦୋଳିତ ମନେ ଦିଗନ୍ତେ ବିହର,
ଦୁଃଖଭରା ପ୍ରାଣୁ ଯେସନେ ତାପ-ତମରାଶି
ବକ୍ଷେ ଭରି ଦୂର ରାଜ୍ୟେ ଯାଏ ସେ ସଞ୍ଚରି ।
"ଏ ମଧୁ-ପ୍ରଭାତବେଳା ମାନସମୋହନ
ଭୂମିର ବିଧାନ ଅଟେ ଅନାଦିକାରଣ !
ଯେଣେ ଏ ଅଧମ ଭକ୍ତିବିନତ ଜଣାର ।"

---

# ଶିଶିର

"ପୌଷ ମାସର ଅଦ୍ୟ ରଜନୀ ସଙ୍ଗିନୀ କିଏ କେ ତୁହି ?
ଭ୍ରାନ୍ତ-ଭ୍ରମର-ଦୋଲାୟିତ-କେଶା ରକ୍ତଗୋଲାପମୁହିଁ !
ସନ୍ଧ, ସକାଳେ ଅଙ୍ଗରେ ତୋର ହିମବିନ୍ଦୁହାର ଲୋଟେ,
କିଏ ବିଷାଦ ଜନମାଉଁ ତୁ ପାଗଳନୀ କି ଲୋ ଗୋଟେ ?
କଣ୍ଟକାନନ-ପୁଞ୍ଜମାଧୁରୀ ଉପଦ୍ରବେ ଲୁଣ୍ଠ କରୁ,
ଚୌର୍ଯ୍ୟର ଫଳେ ଶରୀରେ ଶରୀରେ ଶୈତ୍ୟର ଛଳେ ଥରୁ ।
ଦରିଦ୍ର ତୋ ରାଜ୍ୟେ ଥରହର (ସେ ଯେ) ଧନୀକର ମହାପ୍ରଭୁ,
ଦୁଃଖୀଜୀବନେ ଦୁଃଖ ଭଅଇ କେଉଁ ସାର୍ଥକତା ଲଭୁ ?
ଗ୍ରୀଷ୍ମ ସେଯେ ଗଲା ବିଶ୍ୱଵଜାରେ ଶ୍ରେଷ୍ଠ ପ୍ରତାପ ଢାଳ,
ପ୍ରାବୃଟ ଗଲା କୃଷ୍ଣଗଗନୁ ନଗାଡ଼ି ମୂଷଳ ବାଇ,
ପରେ ଅସିଲା ଚନ୍ଦ୍ରଧବଳ ଶାରଦ ମଧୁର ଯାମ,
ସମ୍ପଦମୟୀ ହେମନ୍ତ ଗୋରୀ ବିଜେ କଲେ ଧରାଧାମ ।
ଦୁଃଖର ପରେ ସୁଖର ଏ କି ସୁମଞ୍ଜୁ-ମଧୁର-ଉତ୍ସ ?
ମରୁପ୍ରାନ୍ତପାର ତରୁଶାଖେ ହା ସ୍ୱଚ୍ଛ କୁସୁମଗୁଚ୍ଛ !
ଆଜ ଏ ଶିଶିର ଯାମିନୀ ବିଷମ ଯାତନାଦାତ୍ରୀ,
କାଲି ତ ଆଣିବ ମଳୟ-ମଧୁର ମଧୁମୟ ରାତ୍ରି ।
ତେଣୁ ମିଳନ୍ତୁ ଶିଶିରଜନନୀ ଦୁଃଖ ଯାତନାଗର୍ଭେ,
କାଲି ତୋର ସୁଖ-ଅମୃତପାନେ ମତ୍ତ ହୋଇବେ ସର୍ବେ ।
କାଲି ତୁ ଆଣିବୁ ସୁମଳୟ ନବୀନ ଭୁବନାରାଣୀ,
ଧରାବକ୍ଷେ ପରା ନବଦ୍ୟୁତିଧାରା ଦେବୁ ପରକାଶି ?
ହରୁ ମୋ ପ୍ରଣତି ଘେନ ଗୋ ଶିଶିରଗୋଲାପହାସିନି !
ଧରାକୋଳେ ନବୀନର ପରା ତୁ ଚିର-ଅନୁରାଗିଣୀ ।"

---

## ପ୍ରଭାତ

ନୀରବ ନିଶାନ୍ତ-ନୀଳ-ଆକାଶର କୋଳୁ
କାନନ ଭୂଧର ତରୁ ପଲ୍ଲବ ଗହ୍ୱରୁ
ତରୁଦଳୁ ଝରି ଝରି ଶୋଭା ଆସେ ଭାସି,
ସେ ଦୃଶ୍ୟ ଦର୍ଶନେ ମୁଗ୍ଧ ଭାବୁକ ଅନ୍ତର ।
ସୁଦୂର ପ୍ରାନ୍ତରେ ଏ କି ଶୋଭେ କୁହେଳିକା ?
ଆଚ୍ଛାଦି କେଦାର, ବନ, ପାଦପପଟଳ
ତଟିନୀ ପ୍ଲାବନେ ଯଥା ଗହନ-କାନ୍ତାର ?
ଠାବେ ଠାବେ ରକ୍ତରବି-ଦୀପ୍ତ-ମେଘମାଳ
ଛୁଟିଛି କି ରଙ୍ଗେ ଭେଦି ପ୍ରଶାନ୍ତ ଗଗନ ?
ସୌନ୍ଦର୍ଯ୍ୟଶାଳିନୀ ସାନ୍ଧ୍ୟ ଦୀପମାଳା କି ସେ
ପ୍ରଦୋଷକାଳୀନ ଶୁଭ୍ର-ଅଘନ-ଧାମଯେ ?
ସମୀର-ଚଞ୍ଚଳ-ନୀଳ-ସରୋବର-କୋଳେ
ତରୁଣ ରବିର ନବ-ଅରୁଣ-କିରଣେ
କି ରଙ୍ଗେ ବିକଶି ଉଠେ ନଳିନୀସୁନ୍ଦରୀ
ହୃଦୟକାନନେ ଯେସନେ ଭକ୍ତି-ପାରିଜାତ
ବିଭାସେ ବିଶୁଦ୍ଧ-କଳ୍ପ-ସମୀର-ପରଶେ ?
ଫୁଲ୍ଲ ମଧୁ ଗନ୍ଧବହ-ମନ୍ଦ ସମୀରଣ
ଆନନ୍ଦ-ଦୋଳିତ ମନେ ଦିଗନ୍ତେ ବିହରେ,
ଦୁଃଖଭରା ପ୍ରାଣୁ ଯେସନେ ତାପ-ତମରାଶି
ବକ୍ଷେ ଭରି ଦୂର ରାଜ୍ୟେ ଯାଏ ସେ ସଞ୍ଚରି ।
"ଏ ମଧୁ-ପ୍ରଭାତବେଳା ମାନସମୋହନ
ଭୂମିର ବିଧାନ ଅଟେ ଅନାଦିକାରଣ !
ଯେସନ ଏ ଅଧମ ଭକ୍ତିବିନତ ଜୀବର ।"

---

## ଗାନ

"ଉଷାର ଆଗମେ
କନକ-କିରଣ
ଖଣି ଖଣି ଦିଅ ଢାଳ ହେ !
କମଳ-କାନନ—
କୋମଳ-ଆନନ—
ବିମୋହନ-ଅଂଶୁ- ମାଳ ହେ !
ଭୁଟୁ ଏ ନଶାର
ଘନ ଅନ୍ଧକାର
ଧରଣୀର ଧ୍ୱାନ୍ତ—
ବିରହ-ବିକାର,
ପ୍ରାଚୀ-ନବ-ଚୂଳେ
ବିଗସି ମଞ୍ଜୁଳେ,
ତମୋଖଣି ଦିଅ ଜାଳ ହେ !"

ସମାପ୍ତ ।



Printed by V. Kar, The Utkal Sahitya Press, Cuttack.